୪ '

# ମାଲ୍ୟଗିରି ।



ପଣ୍ଡିତ ଶ୍ରୀ ବିଶ୍ୱନାଥ ରଥ କାବ୍ୟତୀର୍ଥ ପ୍ରଣୀତ ।

ଉଦାରଚେତା ପାଲଲହଡ଼ାଧୀଶ୍ୱର

ଶ୍ରୀ ଗଣେଶ୍ୱର ପାଲ ମହୋଦୟଙ୍କ ଆନୁକୂଲ୍ୟରେ

ପ୍ରକାଶିତ ।



PRINTED BY B. SARANGI. AT THE
ORISSA PATRIOT PRESS.
MAHAMMADIA BAZAR,
CUTTACK.
1909.

ମୂଲ୍ୟ ଠ୦ ଏ/.

ଓଁ ତତ୍ ସତ୍ ।

## ଭକ୍ତି ନିବେଦନ ।

---

ଉତ୍କଳ ସାହିତ୍ୟ— ଗୌରବ-ବର୍ଦ୍ଧକ
କବି ରାଧାନାଥ ହେ ଗୁଣ ଗ୍ରାହକ ।
ସାହିତ୍ୟ-ସାଗର— ମନ୍ଥନ-ମନ୍ଦର
ଥିଲ୍ଲ ହୃଦ ତବ ହେ ଗୁଣସାଗର ।
ଲଭିଥିଲ ମନ୍ଥି ଯେଉଁ ଜ୍ଞାନ-ସୁଧା
ଧବଳିଲ ତାରେ ଉତ୍କଳ ବସୁଧା ।
ସାହିତ୍ୟ ଜଗତେ ଯୋଗ୍ୟତା ଦେଖାଇ
ପ୍ରାଚୀନ ଶୃଙ୍ଖଳା ଦେଲ ଉଲଟାଇ ।
ନବ ଯୁଗେ ନବ— ସାହିତ୍ୟ-ମମତା
ପ୍ରଦର୍ଶିଲ ତବ ଲେଖନୀ କ୍ଷମତା ।
ଅନୁସରୁ ତବ ପଥ କେତେ ସୁରୁ
ଦେଖାନ୍ତି କବିଏ— ଛଟା ବାହାଦୁର ।
ଗୁରେ ତବ ଦିବ୍ୟ ସରଳ ହୃଦୟ
ସ୍ମରନ୍ତେ, ମୋ ମନ ଶୋକରେ ଅଥୟ ।
ଦେଉଥିଲ କେତେ ଶିକ୍ଷା କଥା-ଛଳେ
ଭୁଲି ନ ପାରିବି ଜନ୍ମ ଜନ୍ମାନ୍ତରେ ।
କରିଥିଲି ଆଶା ଆଉ କେତେ କାଳ
" ଲମ୍ବାଇବି ଗଳେ ଉପଦେଶ ମାଳ ".

ଦାରୁଣ ବ୍ୟଥାତ    ନ ସହିଲା ତାହା,
ଜାଣେ ମୋର ମନ    ହେଉଅଛି ଯାହା ।
ମାଳାଗିରୁ ଦେଖି    ସାହିତ୍ୟ ବଖାଣି
ଗଲ୍ ଶ୍ରୁତ ଯେଉଁ    ଟିପା ରତ୍ନ ଆଣି
ଉତ୍କଳ ସାହିତ୍ୟେ    ଦେଖି ସେ ରତନ
ଘାଣ୍ଟିହେଲା ମୋର    ମହା ଦୁଃଖେ ମନ ।
ସେ ରତ୍ନ ମାନସେ    ଗଣ୍ଠିଧନ କରି
ଦେଖିବାକୁ ଗଲି    ମୁଁ ମାଲ୍ୟ ଶିଖରୀ ।
ନୃପ-କୃପା-ବଳେ    ଯଥାବଧି ଦେଖି
ନେଇ ତବ ଟିପା    ବସିଲି ମୁଁ ଲେଖି ।
ଧରନ୍ତେ ଲେଖନୀ    ସ୍ମରି ନାମ ତବ
ପ୍ରସରିଲା ମୋର    ବଚନ-ବୈଭବ ।
ସ୍ଫୁରିଲା ମାନସେ    କେତେ ନବ ଭାବ,
ଗୁରେ ସେହି ତବ    ଆଶିଷ ପ୍ରଭାବ ।
କିପରି ଲେଖିଲି ?    କବିତ୍ୱ ନ ଥାଇ,
ତବ ଆତ୍ମା ଆସି    ଦେଲା କି ବତାଇ ?
ଦିଅ ଗୁରେ ନିଜ—    ଗୁଣେ ଏହି ବର
ପୂରୁ ବାଞ୍ଛା ତବ    କଲ୍ୟାଣେ ମୋହର ।

ବିନୟାବନତ,
ବିଶ୍ୱନାଥ ରଥ ।

## ଓଁ ତତ୍ ସତ୍ ।

## ଉତ୍ସର୍ଗ ପତ୍ର ।

---

ହେ ନୃପ ତିଳକ ଗଣେଶ୍ୱର-ପାଳ
ପଡ଼ୁଛି କି ମନେ ସେ ଉତ୍ସବ କାଳ ?
ଝର ଝଙ୍କାରିତ ମାଲ୍ୟ ଗିରି ତଳ,
ବହେ ଗନ୍ଧବହ ଯହିଁ ସୁଶୀତଳ ।
ଥିଲେ ତଉପାଶେ ପାଏ ମିଶି ବେଢ଼ି
ଦେଖାଇଲ ରତ୍ନ ଯେତ ଜ୍ଞାନ-ପେତ ।
ପ୍ରାଚୀନ ସାହିତ୍ୟ ଜ୍ଞାନ ଠାବେ ଠାବେ
ଦେଖି ବିସ୍ତାରନ୍ତି ପ୍ରାଣ ଦିବ୍ୟ-ଭାବେ ।
ଛନ୍ଦ ବୋଲି ଭଙ୍ଗି ଖେଳାଇଣ ଡୋଳା।
ବିଲୋକନେ ମତି ମହାନନ୍ଦେ ଭୋଳା ।
ଅହା କି ସାହିତ୍ୟ ଜ୍ଞାନଦର୍ଶି-ଛଟା।
ମିଶିଥାଏ ତହିଁ ପୁଣି କେତେ ଥଟ୍ଟା ।
ନାହିଁ ଶକ୍ତି ମୋର କେଉଁ ଉପହାରେ
ତୋଷିବ ଶ୍ରୀମନ୍ତୁଁ ହୃଦୟେ ଯତ୍ନରେ ।
ଦେଖାଇଲ ଯେଉଁ ଭକତ ମୋ ପ୍ରତି
କି ବୋଲି ବର୍ଣ୍ଣିବି ହେ ଲବ୍ଧଡ଼ା ପତି ।

( । )

ଶ୍ରଦ୍ଧା ଓ ସରଳ ହୃଦୟ ନିର୍ମଳ
ସ୍ପର୍ଶି ନାହିଁ ଯାରେ ଭବ-କୂଟ-ମଳ ।
ଜାଣେ ନାହିଁ ତବ ହୃଦ ଅହଙ୍କାର
ପ୍ରଜାପୁଞ୍ଜ-ଚର— ବିଶ୍ୱାସି ଉଦାର ।
ଜନତା କାନନୁଁ ମାଳୀଗିର ପୁଷ୍ପ
ସମର୍ପଇ ତୋଳ କରାମ୍ବୁଜେ ଭୂପ !
ତୁଁହେ ଯଦ ତବ ଯୋଗ୍ୟ ଉପାୟନ
ମାଳୀଗିର ସ୍ନେହେ କରିବ ଗ୍ରହଣ ।
କରିଅଛି କେତେ ତ୍ରୁଟି ମନ୍ଦ ବୁଦ୍ଧି
ନିଜ ଗୁଣେ କ୍ଷମ ହେ କ୍ଷମା-ଅମ୍ବୁଧି ।

ସଦା ଅଭ୍ୟୁଦୟାକାଙ୍କ୍ଷୀ
ଶ୍ରୀ ବିଶ୍ୱନାଥ ରଥ କାବ୍ୟତୀର୍ଥ ।

---

ଓଁ ତତ୍ ସତ୍ ।

# ମାଲ୍ୟଗିରି ।

ଉତ୍କଳ ସୁଷମା ଗୌରବ ଆଧାର
ତୁଙ୍ଗ ମାଲ୍ୟଗିରି ପ୍ରକାଣ୍ଡ ଆକାର ।
ଋଷିଙ୍କର ତୁଙ୍ଗ ସମ୍ବଳ ପ୍ରଧାନ
ଯୋଗିବରଙ୍କର ଉଚିତ ଆସ୍ଥାନ ।
ତୋର ତରୁ-ଲତା— ପୁଷ୍ପ-ଶୋଭା-ରାଶି
ଦର୍ଶନେ ଆନନ୍ଦେ ହୃଦ ଯାଏ ଭାସି ।
ଶୋଭାର ଆଶ୍ରମ ତୋ-ଶୃଙ୍ଗ-ଶିଖର
ଋଷିଗଣ ସ୍ଥଳ— ଅପସରୀଙ୍କର ।
ନିସର୍ଗ ସୁନ୍ଦର ତୋ-ରମ୍ୟ କନ୍ଦରା
ବନଦେବୀଙ୍କର କୁଟୀ ମନୋହରା ।
ବିଶୁଷ୍କ ଶୈବାଳ ଶୁଭ୍ର ଶିଳାରାଶି
ଦିଶେ ଯେତେ ତୋର ତୁଷାର ବରଷୀ ।
ତୋ-ବିଶାଳ-ଶିଳା— ଆବୃତ ଗହ୍ବର
ନରବାସୋଚିତ ନିଳୟ ସୁନ୍ଦର ।
ଦୂରୁଁ ଶୃଙ୍ଗ ଅଙ୍ଗ ଦେଖନ୍ତେ ତୋହର
ମାରକତ ସ୍ତୂପ ପ୍ରାୟେ ମନୋହର ।
ଅତୁଳ ତୋହର ଶୋଭା ଗଉରବ,
ବର୍ଣ୍ଣିବାକୁ କାହିଁ ମୋହର ବିଭବ ?

କର କୃପା ବାରେ      ଦେବ ବୀଣାପାଣି
ଗିରୀନ୍ଦ୍ର-ବର୍ଣ୍ଣନେ      ପ୍ରସରୁ ମୋ-ବାଣୀ ।
ବହୁଦେଶ ଭ୍ରମି      ଭ୍ରମି ଭୂମଣ୍ଡଳେ
ଦେଖିଲି ଏ ସ୍ଥାନ      ବହୁ ପୁଣ୍ୟ ବଳେ ।
ଗିରି ଦେହେ ସାଜେ      ଅସଂଖ୍ୟ ଗହ୍ୱର
ତୁରଙ୍ଗ କୁରଙ୍ଗୀ      ବିଳାସ ଚତ୍ୱର ।
ଶଙ୍ଖ ଝଲମଲ      ମସୃଣ ପାଷାଣ
ଶୋଭେ ଯେବେ ଗିରି—      ଗୌରବ ନିଶାଣ ।
ବିଟପି-ବିଟପ—      ଆଶ୍ରିତ ବ୍ରତତୀ
ସୁଷମା ଦର୍ଶନେ      ଆନନ୍ଦ ମତି ।
କି ବର୍ଣ୍ଣିବ ମୋର      ଶିଥିଳ ରସନା
ତୋ-ଶୋଭା ଦର୍ଶନେ      ଲାଖିଇ ନୟନ ।
ଚିର ପିପାସିତ      ହୃଦୟ-ବାସନା
ସଫଳିଲା ଆଜ      ମୋର ଗିରିରଣା ।
ପାଦ ଦେଇଁ ଚାଲି      ଚାଲି ଏକ ଯାମ
ଆରୋହିଲି ଧୀରେ      ତୋ ଶିଖର ଧାମ ।
ସଦା ଯହିଁ ଶୀତ—      ଋତୁ ବିଚ୍ଛପଣି,
ଘଟେ ପୁଣି ତାହିଁ      ମନ୍ଦ ସମୀରଣ ।
ଜଳେ ଅନାଦର,      ଅନଳେ ଆଦର,
ନ ବାଧଇ ଯହିଁ      ଚଣ୍ଡ ରବିକର ।
ଶୀତର ପ୍ରତାପ      ଦେଖି ତୋ-ଶିଖରେ
ଭାବିଲି "ଅକାଳେ      ମାଘ କି ସଞ୍ଚରେ" ?

ଶୀତେ ଅବୟବ        ଥରଥରେ ଥରେ,
ହୁଏ ଘନୀଭୂତ        ତପ୍ତ ଘୃତ ଖରେ ।
ଅଙ୍ଗ ଲୋଡ଼େ ସଦା        ଅଙ୍ଗ-ହୀଣ-ସୁଖ,
ଖୋଲା ଦେହେ ଶୀତ-        ବାତେ ବହୁ ଦୁଃଖ ।
ହେ ଗିରୀନ୍ଦ୍ର ଦେଖି        ତୋ-ଦିବ୍ୟ-ପ୍ରତାପ
ଧର୍ଷଇ ନାହିଁକି        ରବି ତାର ତାପ ?
ତୋ-ଅଗ୍ର-ଆଶ୍ରମେ        ପାନ୍ଥେ ଧୂନି ଜାଳ
ନବସନ୍ତ ସୁଖେ        ତୋ-ମହିମା ଭଳ ।
ତଳେ ଦେଖିଥିଲି        ଯେ ବଡ଼ ପାହାଡ଼,
ତୋ-ଶିଖରୁଁ ଦିଶେ        ଯେହ୍ନେ ବୁଦା ବାଡ଼ ।
ମହାଦ୍ରୁମ ଦିଶେ        ଯେହ୍ନେ ଘାସ-ବୁଦା
ତୁଙ୍ଗ ଶୈଳ ଦିଶେ        ଯେହ୍ନେ ମାଟି-ଢୁଦା ।
ତୋ-ଶିଖରୁଁ ସମ—        ତଳ ଦିଶେ ଧରା,
ଖାଲ ଢିପ ତହିଁ        ନ ପଡ଼ଇ ଧରା ।
କାହିଁ ଧଳା, କାହିଁ        ନେଳି, କାହିଁ କଳା,
କାହିଁ ରଙ୍ଗ ପୁଣି        ଦିଶେ ବସୁନ୍ଧରା ।
ଦର୍ଶନେ ଆନନ୍ଦେ        ହୃଦ ଯାଏ ପୂରି
ଭୁଲିବାକୁ କାହିଁ        କବିବାହାଦୁର ? ।
ବହିଛି ବିଧାତା        କବା ଭଳି ଭଳି
ପ୍ରକୃତ ଦେହର        ନ୍ୟାୟବଳ ପାଳି ?
କଳା ଧଳା ନେଳି        ରଙ୍ଗ ଖେଳି ଅଳି
ଅଛେ ତାର ନାନା        ବର୍ଣ୍ଣଶୋଭା ପାଳି ।

ଦେଖ ତହିଁ ପୁଣି ଯେ ଗୋଟି ଗୋଟିଅ
ମହାଦ୍ରୁମ ଅଳ, ସେ ତାର ବୁଟିଅ ।
ହାତୀ, ଘୋଡ଼ା, ନୌକା, ପାହାଡ଼ ନଗର,
ରାଜା, ମନ୍ତ୍ରୀ, ବଡ଼ ବଡ଼ ମହୀଧର ।
ଶୋଭା-ରାଣୀ-ସଙ୍ଗେ ଖେଳଇ ପ୍ରକୃତି,
ଅହା କି ଅପୂର୍ବ ବର୍ଣ୍ଣ-ଶିଳ୍ପି-କୃତି ? ।
କେତେ ପ୍ରଜାପତି ରୂପ-ମନୋହରୀ
ଉଡ଼ନ୍ତି ଶିଖରେ ନାନା ରଙ୍ଗଧରି ।
ଭ୍ରମର କେବେ ବା ଭ୍ରମଇ ଭ୍ରମରେ
ମଲ୍ଲୀ ଭ୍ରମେ ଚୁମ୍ବେ ଘାସ ସୁମନରେ ।
ବାସଭୂଷା ବନ୍ଧୁଁ ତାକୁ ପରିହରି
ଯଳାଏ ତୋ-ବକ୍ଷେ ଗୁଞ୍ଜର ଗୁଞ୍ଜର ।
ବାୟୁ-ବଳେ ତୋର ନଚେ ଶଙ୍କି ଶଙ୍କି
ଉଡ଼ଇ ଶିଖରେ ଜଟପକ୍ଷ କଙ୍କି ।
ଶାଖାମୃଗେ କେବେ କେବେ ତୋ-ଶିଖରେ
ବିହରନ୍ତି ସୁଖେ ମାତି ପ୍ରେମଭରେ ।
ଶୋଭଇ ଶିଖରେ ପ୍ରଚୁର ପନସି
ଋକ୍ଷୁ ଯାର ମତ୍ତ— ଇଭ-ଗଣ୍ଡ-ଧ୍ୱଂସି ।
ଠାବେ ଠାବେ କାହିଁ ହୋଇ ଅଛୁ ଠିଆ
ଛନ୍ଦାକୃତି ଗିରୁ ପାଦପ ଗୁଡ଼ିଆ ।
ତୋ ଅଗସ୍ତି ଗୁମ୍ଫା— ସମ୍ମୁଖେ କାମିନୀ
ବର ଅଛୁ ଜାମ୍ବୁ ବସନ୍ତ ହାସିନୀ ।

ପଶିଲୁ ଅନ୍ଧାର ଟମ ଗୁମ୍ଫା ଭିତର
ସଙ୍ଗତେ ଲଣ୍ଠନ, ବେନି ସହଚର ।
ବାରୁଣୀ ଅଗାରେ କଛୁ ଦୂର ଯାଇ
ଗମିଲୁ ଉତ୍ତରେ ମସ୍ତକ ନୁଆଁଇ ।
ନମ୍ରୁଁ ନମତର ଦଣ୍ଡେ ସେ ଗହ୍ୱର
ବଢ଼ିଲା କ୍ରମଶଃ ତମା ମାନବେ ଦର ।
ବେନି ପାର୍ଶ୍ୱେ ଶୋ[illegible] ଶିଳାଭିତ୍ତି ମାଡ଼ି
ଫେର ମୁଁ ଅସିଲୁ [illegible] ପିଚ୍ଛୁଡ଼ି ।
ଦ୍ୱାର ଦେଶେ ଅସି ଚିତ୍ତ ଥରହର,
ବୁକୁ ଦାଉଁ ଦାଉଁ, କମ୍ପେ କଳେବର ।
ତହୁଁ ଶିଖରାଗ୍ରେ ଗଲୁଁ ଆରୋହି
ବିଲୋକିଲୁ ଦୃଶ୍ୟ ମନୋନେତ୍ରମୋହି ।
ସେ ଅଗ୍ର ଶିଖରୁଁ ବସୁନ୍ଧରା-ତଳ
ଦିଶେ ଯେସନେ ବା— ଯଦ୍ଧ ରସାତଳ ।
ଧରାତଳ ତହୁଁ ଦିଅନ୍ତେ ଅନାଇଁ
ଭ୍ରମ-ବାତ ମଥା ପକାଏ ଘୂରାଇ ।
ହିଆ ଥର ଥର, ଖସି ଯାଏ ପଦ,
ହୁଏ ଚତୁଷ୍ପଦ ସେ କାଳେ ଦ୍ୱିପଦ ।
ଉହ୍ଲଲେ ଚୋ-ଗ୍ରୁ- ଚୂଡ଼ା ଗିରିରଣୀ
ଦାର୍ଜିଲିଙ୍ଗ ବୋଲି ବାଜଇ ବାଜଣା ।
ତଥି ପରେ ଦିଶେ ଦୃଶ୍ୟ ଅପ୍ରମିତ
ଦର୍ଶନେ ମାନସ ନୟନ ମୁଦିତ ।

ଦଶେ ବନ୍ଧୁଦୂରେ କଜ୍ଜ୍ୱଳ କାଳିଆ
ବାମଣ୍ଡା-ଗୌରବ— ଶଇଳ ଚୂଳିଆ । (୧)
ପାଦତଳେ ଯାର ବ୍ରାହ୍ମୀ ତରଙ୍ଗିଣୀ
ଖେଳଇ ଆନନ୍ଦେ ବିବିଧ ରଙ୍ଗିଣୀ ।
ନୈସର୍ଗିକ ଶିଳା— ବନ୍ଧ-ଘରେ ଯାର
ଭୀଷଣ ଶାର୍ଦ୍ଦୂଳେ କରନ୍ତି ବିହାର ।
ଏହି ଯେ ଦିଶଇ ଗିରି ଅନ୍ଧାରୁଆ
ଅଭ୍ରଂକଷ ଯାର ଶିଖର ସରୁଆ ।
ସେ ଗନ୍ଧମାଦନ (୨) ପର୍ବତର ମଥା
ଦଶେ ବନ୍ଧୁ ଦୂରେ କଳା ମେଘ ଯଥା ।
ତ୍ରେତା ଯୁଗେ ଯେବେ ରାଘବ ଆଦେଶେ
ହୁପାଡ଼ି ବାନର ବାରେ ସେତୁ ଅଶେଷ
ଫିଙ୍ଗିଲେ ଶଇଳେ ନୀଳାର୍ଣ୍ଣବ-ନୀରେ
ବସି ଥିଲା ଦମ୍ଭେ ସେ କାଳେ ଯେ ଧୀରେ ;
ବିରଞ୍ଚିର ଯେଣୁ ସେ ରତ୍ନ-ଆସ୍ଥାନ
ବିରଞ୍ଚି ନନ୍ଦନ ବୀର ଜାମ୍ବବାନ;
ନିଷେଧିବେ ତାର ଦେହ ଉତ୍ପାଟନେ
ଭାବି ଏହା ବସି ଥିଲା ଯେ ସ୍ୱମନେ ।
ଅଶ୍ୱିନୀ କୁମାର— ଔଷଧ ବାଟିକା
ଭବେ ଯେଣୁଁ କର ତେଣୁଁ ଅନ୍ଧମିକା;

(୧) ବାମଣ୍ଡା ଉତ୍ତର ପ୍ରଦେଶ ।
(୨) କେନ୍ଦୁଝରର ପର୍ବତ ।

ବସିଥିଲା ଭିବ        ଅବା ଯେ ଗୁମାନେ
ନ ନେବେ ଉପାଡ଼ି        ତାକୁ କପିମାନେ ;
ଅଶ୍ୱିନୀ କୁମାର        କୁମର ମଇନ୍ଦ
ମହାବଳ ଯେଣୁଁ        ଆବର ଦ୍ୱିବିଦ ।
କପି-ସେନା ମଧ୍ୟେ        ଥିଲେ ସେ ସମୟେ
ଉପାଡ଼ିବେ ନାହିଁ        ତାକୁ ପିତୃ-ଭୟେ ।
ଉମା ମହେଶ୍ୱର—        ବିହାର ଆଳୟ
ଧର୍ମ-ଉଚ୍ଚତମ        ନଗ ହିମାଳୟ,
ମେରୁ ଦିବିଷଦ—        ପ୍ରିୟ ନିକେତନ,
ମଲୟ ବାସବ—        ରମଣ ସଦନ ।
କାବେରୀବଳୟ        ମଲୟ ଅଚଳ,
ଚିତ୍ରକୂଟ ରାମ—        ବିହରଣ ସ୍ଥଳ ।
ସମୁଦ୍ର ମନ୍ଥନ—        ସମର୍ଥ ମନ୍ଦର,
ଅରଣ୍ୟାନୀମୟ        ବିନ୍ଧ୍ୟ ନଗବର;
ଛାପି ବପୁ ଥିଲେ        ଯେ ରବି ମଣ୍ଡଳ
ଅଗସ୍ତି ଗୌରବେ        ଶାନ୍ତ କୋପାନଳ ।
କଇଳାସ ପୁଣି        କୁବେର ନିବାସ
ଏମାନଙ୍କ ସଙ୍ଗେ        ଶାସ୍ତ୍ରେ ଯା-ବିକାଶ ।
ନୀଳରୁଚି ନଭେ        ମିଶି ଗଲା ପରି
ଏହି ଯେ ଦିଶଇ        ସୁନୀଳ ଶିଖରୀ ।
ତାପାଶେ ଦିଶଇ        ଶୋନାସିକାଗିରି
ନଭଶ୍ଚୁମ୍ବି ଶୃଙ୍ଗ        ଅନୁପମ ଶିରୀ ।

ପୁଣ୍ୟ-ନୀର ଯାର ନଦୀ ବୈତରଣୀ,
ଜନରୁ ବାହାର ପାବଇ ଧରଣୀ ।
ଗୁପ୍ତ (୧)ଗଙ୍ଗା ଯାର ଅଟେ ଜନ୍ମ ସ୍ଥଳ
ଝୁଲ୍ଲେ ଯା-ନୀର ପୁଣ୍ୟ ଗାଙ୍ଗଜଳ ।
ଷୀରପାନେ ଯାର ପୁଷ୍ଟ ପାର୍ଶ୍ୱଦେଶ
ଝୁଲ୍ଲେ ଯାହାର ମହିମା ଅଶେଷ ।
ଦଶ ମାତୃ-ଦେବୀ ଶୋଭନ୍ତ ଯା-କୂଳେ
ଇନ୍ଦ୍ରାଣୀ ରୁଦ୍ରାଣୀ ବ୍ରାହ୍ମୀ ଆଦି ଠୂଳେ ।
ବିରଜା ଯାହାର ସଲିଳ ମୁକୁରେ
ଦେଖନ୍ତ ବଦନ ଶୋଭିତ ଚକୁରେ ।
ଅଶ୍ୱ ମେଧ ଘାଟେ ଯହିଁ ଯାତ୍ରିମାନେ
ଉଦ୍ଧାରନ୍ତ ପିତୃ— ଗଣ ପିଣ୍ଡଦାନେ ।
ଏଣେ ଦଶେ ପୁଣି ଶରଳ ବାଳୁଁଅ ( ୨ )
ତାଲଚେରେ, ଶୃଙ୍ଗ ଯାର ମେଘଛୁଆଁ ।
ଘନ ଅଙ୍କେ ଶୋଭେ ଚପଲା ଯାହାର
କନକ ଉପଲେ ଯେସେ ହେମ ଶାର ।
ଯହିଁ ବୀର ବର ନୃପ-କୁଳନିଧି
କିଶୋର ଭୂପାଳ କରନ୍ତ ପାରଧି ।
ଢେଙ୍କାନାଳ ପଲ୍ଲୀ— ଶୁଭ୍ର ଗିରି ମାଳା
ଶୋଭେ ଯଥା ନୀଳ— ମଣି-ଭଣ୍ଡ-ଶାଳା ।

---

( ୧ ) ବୈତରଣୀ ନଦୀ ଏହିଠାରୁ ବାହାର ହୁଏ ।
( ୨ ) ତାଲଚେରର ପର୍ବତ ବିଶେଷ

ଦଗଇ ବଣେଇ  ପରବତ ରାଜ  
ଶୋଭି-ଦେବୀ-କେଶ—  ପାଶ ପ୍ରାନ୍ତେ ରାଜି;  
ମୁକ୍ତାନନ୍ଦ-ଜଳ  ଯହିଁ ଖଣ୍ଡାଧାର (୧)  
ପଡ଼ଇ ପ୍ରପାତ  ଖଣ୍ଡାଧାରାକାର ।  
ଦଶେ ଭୂଁୟାପୀଡ଼  ପାବୁଡ଼ି ପର୍ବତ  
ତୋ-ଶିଖରୁଁ ଇନ୍ଦ୍ର—  ନୀଳ-ହୀଡ଼ବତ ।  
ଚମ୍ପକ ନିକୁଞ୍ଜ—  ପୂର୍ଣ୍ଣ ଗିରମାଳା  
ରାଜେ ଯହିଁ ଧୀର—  ଭୂଁୟା-ପର୍ଣ୍ଣ-ଶାଳା ।  
ଏସବୁ ସୁନ୍ଦର  ଦୃଶ୍ୟ ଭୁହି ଦେଖି  
ରାଜୁ ଗିର, ଭବ—  ପ୍ରପଞ୍ଚ ଉପେକ୍ଷି ।  
ତହୁଁ ଶାନ୍ତକୁଞ୍ଜେ  ଗମିଲ ଭିତରେ  
ପାଦ ଚପି ଚପି  ଶିଖର ଭତ୍ତରେ ।  
ଖସି ପଡ଼ିବାର  ମୁହୁର୍ମୁହୁ ଶଙ୍କା  
ଜନମି ହୃଦୟେ  ଉପୂଜାଏ ଦକା ।  
ତୋ ଚୂଡ଼ା ଆରୋହୀ  ପରିଶ୍ରାନ୍ତ ପାନ୍ଥେ  
ବସନ୍ତ ଆଉଜି  ଯହିଁ ଶିଳା କାନ୍ଥେ ।  
କାମିନୀ ସଙ୍ଗତେ  ତହିଁ କାଉଁଚିଆ  (୨)  
ବସ୍ତାରନ୍ତି ପ୍ରେମ-ମଦ  —ଭରେ ହିଆ ।  
ଛାୟାତଳେ ଦର  —ଗଉରୀ ସୁନସୀ,  
ଶୋଭଇ ପାଟଳ  ପୁଷ୍ପ ତହିଁ ଧରି ।

---

[୧] ବଣେଇର ଜଳପ୍ରପାତ  
[୨] ବୃକ୍ଷ ବିଶେଷ

ନିକଟେ ତାହାର    କାନନ ତୁଳସୀ,
ଶୋଭେ ଊର୍ଦ୍ଧ୍ୱମୁଖୀ    ଜଟିଳା ବିଳସି ।
ଠାବେ ଠାବେ ତହିଁ    ଦେଖି କେତେ ଖୋଲ,
ମନ୍ଦାନନ୍ଦେ ପୂର ଚିତ୍ତ    ହେଲା ଭୋଳ ।
ଭ୍ରମୁଁ ଭ୍ରମୁଁ ଶୃଙ୍ଗେ    ଦିବା ଅବସାନ,
ଆଶ୍ରିଲେ ବ୍ରାହ୍ମଣୀ    କ୍ରୋଡ଼ ଭୂମିମାନ ।
ସୁବର୍ଣ୍ଣ ତୋରଣ    —ସଭ୍ରା-ଅନ୍ତରାଳେ
ବାରୁଣୀ ସୁନ୍ଦରୀ    ଖେଳନ୍ତି ସେକାଳେ ।
ବ୍ରାହ୍ମୀ-ନୀରେ ପ୍ରତି—    ଫଳ ହେମ-କର
ନଚ୍ଚଇଲା ସ୍ୱର୍ଣ୍ଣ—    ତରଙ୍ଗ ନିକର ।
ପଶ୍ଚିମ ଗଗନେ    ଲୋହିତ ବରଣ,
ତପ୍ତ ସ୍ୱର୍ଣ୍ଣ ଥାଳୀ    ପରାଏ ତପନ ।
ରବିରଶ୍ମି କ୍ରମେ    ତେଜ ବସୁନ୍ଧରା
ଆଶ୍ରିଲା ଶିଖର    ତରୁ ପରମ୍ପରା ।
ରବି-ହେମ-ରଶ୍ମି    —ଶୋଭି ବୃକ୍ଷାବଳୀ
ଲୋହିତ ବଲ୍କଳ—    ଧାରୀ ପ୍ରାୟେ ଝଳି ।
ନିସ୍ତବ୍ଧ ନିଶ୍ଚଳ    ସେ ତରୁ ନିକରେ
ଧ୍ୟାନେ ମଗ୍ନ ଅବା    ସେକାଳେ ଶିଖରେ ।
ରବି ଅସ୍ତ ଦେଖି    ସନ୍ଧ୍ୟା ଉପଗତା
ପାଟଳ ବରଣୀ    କି ବିଦ୍ରୁମ ଲତା ।
ସନ୍ଧ୍ୟା ନାଶେ ଦୁଃଖେ    ଆସେ ବିଭାବରୀ
ଅନ୍ଧକାର-କୃଷ୍ଣ—    ଅଞ୍ଜନ ଆବରି ।

ସଜ୍ଜନ ହୃଦୟ    ବରଜ ଅନ୍ଧାର
ଅନ୍ଧକାରମୟ    ବିହ୍ୱଳ ସଂସାର ।
ଏକାଳେ ଉଦିତ    ନଭେ ସୁଧାକର
ଦଶଦିଶ ଦିଶେ    କିରଣେ ସୁନ୍ଦର ।
ବିଧୂ କି ତ୍ରିଯାମା—    ଶରୀରେ ଚନ୍ଦନ
କର-ସ୍ପର୍ଶେ କିମ୍ବା    ସ୍ନେହେ ବିଲେପନ !
ତୋ ଶ୍ୟାମଳ ଅଙ୍ଗେ    ପଡ଼ୁଁ ଚନ୍ଦ୍ର-କର
ଆହା କି ସୁନ୍ଦର    ମନୋମୁଗ୍ଧକର ।
ତପନ-ତନୟା—    ତଟିନୀରେ ଆସି
ମିଶିଗଲା କିବା    କ୍ଷୀର ଅମ୍ବୁରାଶି ।
ଅବା ବିଧି ରବି—    ତାପ-ନାଶ-ଆଶେ
ଘନସାରେ ମଣ୍ଡି    ଲିପିଲା ଉଲ୍ଲାସେ ?
ବିନ୍ଦୁକାନ୍ତିଁ ଅବା    ଦଗ୍ଧର ବିନ୍ଦୁଧା
ସୁଧାରେ ଧବଳ    ଦେଲା କି ବସୁଧା !
ବଢ଼ାଇବାକୁ ବା    ମହୀର ପ୍ରସିଦ୍ଧି
ଗାଙ୍ଗଜଳେ ତାକୁ    ପ୍ରକ୍ଷାଳିଲା ବିଧି ।
ଚନ୍ଦ୍ର ବ୍ୟାଜେ ଅବା    ପ୍ରକୃତ ସୁନ୍ଦରୀ
ହୀରକ ସ୍ୟନ୍ଦନେ    ଭ୍ରମଇ ବିହରି ।
କି ସୁନ୍ଦର କଳା—    ନିଧି ସୁଶୋଭନ
ଶୋଭାରାଣୀଙ୍କର    ତାଟଙ୍କ ଯେସନ ।
ଚନ୍ଦ୍ର ଦେହେ ଦିଶେ    ସେ' କଳଙ୍କ ଧାର
ମୁକ୍ତା ଥାଳୀରେ କି    ମାରକତ ଗାର ?

ବହୁ କି ବହନ୍ତି ଗଗନ କାନନେ
ରୌପ୍ୟ ଆଲବାଲେ ତମାଲ ଯତନେ ?

ତାରା-ବିମଣ୍ଡିତ ଦିଶଇ ଆକାଶ
ପ୍ରଫୁଲ୍ଲିତ ମଲ୍ଲୀ— ବାଟୀ (୧) ପ୍ରକାଶ ।
ଉଡୁପନ୍ତି ଛଳେ ବିଶ୍ୱ ଜୟ ଯଶ
ଖେଳଇ କି ଶୋଭା ରାଶୀ ହସ ହସ ?

ତୋ-ଶୁକ୍ଳ ଶୈବାଳ ଧବଳ ଶେଖର
ଚନ୍ଦ୍ର ହାସେ ଦିଶେ କି ମନୋଜ୍ଞତର !

ପଡ଼େ ମନେ କିବା ଗଣେଶ୍ୱର ପାଳ
କୁମାର ପୂର୍ଣ୍ଣିମା ଚନ୍ଦ୍ର ନିଶା କାଳ ?

ତୁମ୍ଭେ ଅନୁଭବି ଜାଣ ସେ ସମ୍ପତ୍ତି
ବାରମ୍ବାର ତେଣୁ ସାକ୍ଷୀ କରେ ମତି ।

ଦିଶେ କି ସୁନ୍ଦର ମାଲ୍ୟ ଗିରି ଚୂଡ଼ା
ସେ କାଳେ ଉପମା— ଗଉରବ ଚୂଡ଼ା ।

ମନେ କି ଭାବିବ ଭ୍ରମନ୍ତେ ସେଠାରେ,
ଅନୁଭବ ବିନା କେବା ବର୍ଣ୍ଣିପାରେ ।

—:୦:—

(୧) ଉଦ୍ୟାନ ।

ସେ ଗୃହେ ନୀରତ— ଦୃଶ୍ୟ ମନୋହର
ଦେଖି ପ୍ରବେଶିଲି ତହିଁ ବାସଘର ।
ପଞ୍ଚ ଅଗ୍ନି ସ୍ଥାପି ଶୋଇଲି ଖଟରେ ,
ତଥାପି ଶୀତର ଆଧିକ୍ୟ ନସରେ ।
ହରାଇଲି ନିଦ୍ରା— ବଳେ ବାହ୍ୟ ଜ୍ଞାନ ,
ଦେଖୁଥିଲି ସ୍ୱପ୍ନେ ସେହି ଦୃଶ୍ୟମାନ ।
ପ୍ରଭାତିଲା ସୁଖେ ଶୁଭ ବିଭାବରୀ ,
ତେଜିଲି ଶୟନ ପୁଣ୍ୟ ଶ୍ଲୋକ ସ୍ମରି ।
ତ୍ରିଯାମା—ବିରାମ— ପିଶୁନ ସମୀର
ଜ୍ୟୋସ୍ନା-ଜଳ-ସ୍ନାନେ ଶୀତଳ-ଶରୀର ;
ନିଶା-ବିକସିତ— କୁସୁମ-ସୁବାସୀ ,
ସେବିଲା ଶିଖର— ଦେଶ ଧୀରେ ଆସି ।
ପ୍ରତୀଚୀ-ଅଙ୍ଗନା— ବଦନ-ଚୁମ୍ବିକ ,
ରଜନୀ-ବିରହେ ରଜନୀ-ନାୟକ ;
ଭଜିଲେ ପାଣ୍ଡୁତା ବିରଜ ହରଷ ,
ଆଦିତ୍ୟ-ଉଦୟେ ବିଷଣ୍ଣ-ମାନସ ।
ପ୍ରାଚୀ-ବଧୂ-ଭାଲ— ସିନ୍ଦୂର-ତିଳକ ,
ଦଗ୍ଧ-ହେମ-ପିଣ୍ଡ— ନିଭ ଜକ ଜକ ;
ବ୍ୟୋମ-ସରୋବର— ତାମରସ-ଛବି ,
ଉଦୟ-ଶିଖର ଆରୋହିଲେ ରବି ।
ନବ-ରବି-କର— ରଞ୍ଜିତ-ଶରୀର
ହସନ୍ତି ପାଦପେ କେତେ ସୁରୁଚିର ।

ଅଧୋଦେଶେ ଦୂରେ      ଉଡ଼ନ୍ତି ପକ୍ଷୀଏ ,
ଶବ୍ଦ କିନ୍ତୁ ଶୁଣି      ନଯାଏ ଟିକିଏ ।
କ୍ରମେ କ୍ରମେ ରବି      ଉଠିଲେ ଆକାଶେ ,
ଚଳିଲି ତହୁଁ ମୁଁ      ଶୋଭା-ଦୃଷ୍ଟି-ଆଶେ ।
ବଲ୍ମୀକଳ ଶୈଳେ      ଭ୍ରମୁଁ ଧର୍ମଦ୍ୱାର ,
ସମ୍ମୁଖେ ତାହାର      ସୁଦୃଶ୍ୟ ଅପାର ।
ସ୍ତର ସ୍ତର ହୋଇ      ପରବତ-ରାଜି
ଦିଶଇ ଅଗ୍ରତେ      ଶ୍ୟାମ ଅଙ୍ଗେ ସାଜି ।
ଶୋଭଇ ପ୍ରଚୁରେ      ସିଧା ଶାଲଗଛା
ଶୀତ ବାତ ସ୍ପର୍ଶେ      କମ୍ପୁଅଛି ମଜ୍ଜା ।
ଦୂରେ ଦିଶୁଅଛି      ବ୍ରାହ୍ମଣୀ ତଟିନୀ,
ଗଙ୍ଗା-ସ୍ୱଚ୍ଛ-ନୀର      ଭୁଜଙ୍ଗ-ଗାମିନୀ ।
ସୁଶ୍ୟାମଳ ମହୀ—      ଅନ୍ତରାଳେ ଦିଶେ
ଢଳା ରୌପ୍ୟଧାର      ମାରକତେ କି ସେ ?

ଅହୋ ! କି ଭୀଷଣ      ପାତାଳ-ବିବର,
ବିରାଜନ୍ତି ଯହିଁ      ମହା (୧) ପାଟେଶ୍ୱର !
ଶାରଦୀୟ-ପୂଜା—      ଅନୁମତି-ଆଶେ
ଅଗ୍ରେ ଯହିଁ ହୁଏ      ଅର୍ଚ୍ଚନା ଉଲ୍ଲାସେ ।
ପଶିଲି ଶୈବାଳ—      ପିଚ୍ଛିଳ ତା-ମାର୍ଗେ
ହସ୍ତ ପଦ ଚିପି,      ମୁଖ ଅଧୋଭାଗେ ।

---

୧ ମହାପାଃ , ପାଲଲହଡ଼ାର ଅଧିଷ୍ଠାତ୍ରୀ ଦେବତା ।

ଲଙ୍ଘନ୍ତେ ସେ-ପଥ କଷ୍ଟେ, ବଡ଼ଖାଡ,
ପଡ଼ିଗଲ୍ୟମନେ କୂପ-ପଶା ଖାଡ଼ ।
ଭାଗ୍ୟଦୋଷୁଁ ଯେବେ ଖସି ଯିବ ଟିପ,
ଲଭିବ ସେକ୍ଷଣି ଜୀବନ-ପ୍ରଦୀପ ।
ଦେଖିଲ୍ ସେଠାରେ ଲିଙ୍ଗମୂର୍ତ୍ତି ଶିବ,
ପଳାଇଲ୍ଗ ହୃଦୁଁ ସକଳ ଅଶିବ ।
ଗଣେଶ୍ୱର ନୃପ— ଜାଗ୍ରତ-ପସରା
ରାଜେ ଦୀପାବଳୀ ନଇବେଦ୍ୟ ସରା ।
ଶୀତେ ମାତ୍ର ଯାଏ କାଲ୍ ହାତ ଗୋଡ଼,
ପ୍ରଣମିଲ୍ ବହୁ ଭକ୍ତି-କର-ଯୋଡ଼ ।
" ନମୋ ନଗ-ସୁତା— ପ୍ରାଣ-ବଲ୍ଲଭାୟ,
ନମୋ ଭକ୍ତ-ଜନ— କଳ୍ପ-ପାଦପାୟ;
କୃତ୍ତିବାସ— ସୁତା-ପ୍ରାଣେଶ୍ୱର,
ଅହ ମତ ଦୁଃଖୀ, ହର ସମ୍ବୁର ।"
ଫେରିଅସି ତହୁଁ ଉଭାଦେଲ ଦ୍ୱାରେ,
ବାଲୋକଲ ଦୃଶ୍ୟ ଅପାର ସେଠାରେ ।
ଉର୍ଦ୍ଧ୍ୱେ ନୈସର୍ଗିକ ମହାଶିଳା-ଖଣ୍ଡ
ନାହିଁ ଖରା, ବର୍ଷା; ବନ୍ଦେ ଶୀତ ବାତ ।
ବସିଥିଲେ ସେହୁ ଶୀତଳ ପବନେ
ସଂସାର ଜଞ୍ଜାଳ ନ ପଡ଼ଇ ମନେ ।
ଏ ସୁନ୍ଦର ଦେଶେ ବାବାଜି-କନ୍ଦରା,
ଅସାର-ସଂସାର— ଭୟ-ଦୁଃଖ-ହରା ।

ଦୃଶ୍ୟ କି ବିରାଟ ତାର ସମ୍ମୁଖରେ,
ଭାବନ୍ତେ, ଉଲ୍ଲସି ହୃଦ ଉଠେ ଥରେ ।
ଦିଶୁଅଛୁ ତଳ ପାତାଳ ପ୍ରକାର,
ବିଲୋକନେ ଅବା ଧକଇ କାହାର ?
ଚତୁର୍ଦ୍ଦିଗ ବ୍ୟାପି ଦିଶେ ଧୂମରାଶି,
ଖଟେ ଶୀତ ବାତ ମୃଦୁ ମୃଦୁ ଆସି ।
ଊର୍ଦ୍ଧ୍ୱେ କନ୍ଦରାର ବିଶାଳ ପାଷାଣ,
ଦେବ ନକ୍ଷେ ପୁରୀ (୧)— ମନ୍ଦିର-ପ୍ରମାଣ ।
"ପଶିବି କିରୂପେ ସେ ଗୁହା ଭିତର"
ଭାବିଲି ସଭୟେ, ଦେହ ଥର ଥର ।
ଅବଶେଷେ କରି ସାହସ ଦୁସ୍ତର
ନର ହୋଇ ତହିଁ ହୋଇଲି ବାନର ।
ଅଧୋମୁଖେ ହସ୍ତ— ପଦେ ଦେଇ ଭର ,
ଆରୋହିଲି କଷ୍ଟେ ସେ ଭୀମ କନ୍ଦରା ।
ଗଣେଶ୍ୱର ନୃପ— ବିଶ୍ୱର ନିଳୟ
ଦିଶେ ତହୁଁ ଦୂରେ ଶୁଭ୍ର ସୁଧାମୟ ।
ବସନ୍ତେ ବସନ୍ତ— ବିକାଶୀ ରସାଳ-
ବକୁଳ-ଆମୋଦେ ଗଣେଶ୍ୱର ପାଳ,
କରନ୍ତି ବିଶ୍ୱର ଯହିଁ ନ୍ୟାଯ୍ୟପଟଣେ,
ପକ୍ଷପାତ ଜଣା ନାହିଁ ପ୍ରଜାଗଣେ ।

---

୧ ଶ୍ରୀକ୍ଷେତ୍ର ସ୍ଥିତ ମହା ଦେଉଳ ସଦୃଶ ।

ଶିଖରୁଁ ବାବାଜି— ଗୁମ୍ଫା-ଦ୍ୱାର ଯାଏ
ଅରଣ୍ୟ ବିଚିତ୍ରା ପଥେ ଶୋଭା ପାଏ ।
ସେ-ପଥେ ଆସିଲି ଫେରି ମୁଁ ନିବାସେ,
ବିଶ୍ରମିଲି ଦଣ୍ଡେ ଶ୍ରମ-ନାଶ-ଅଶେ ।
ଉଭା ହୋଇ ତହୁଁ ଦେଖିଲି ସୁଷମା,
ଭୁଲିବାକୁ ନାହିଁ ସଂସାରେ ଉପମା ।
ଅଭ୍ରୁଁ ଖସି କାହିଁ ଶୋଭେ ଅଭ୍ରରାଜି,
ଦିଶେ ଦାଉ ଦାଉ ରବିଙ୍କର ବାଜି ।
ପ୍ରସନ୍ନ ହୃଦୟ ଦେଖି ସେ ବିଭବ,
ଉପୁଜଇ କେତେ ଭାବ ନବ ନବ ।
ବନଦେବୀଙ୍କର ବିଳାସ ଭୁଆଣି
ଗିରି କି ହୋଇଛି ରଜତ ଛୁଆଣି ?
ଅବା ଶୁଭ୍ର ଛବି ଠେକା ଗିରିଶିରେ ?
ଯେଣୁ ସେ ଗିରୀନ୍ଦ୍ର ଉତ୍କଳ-ମହୀରେ ।
ତୋ-ଦର୍ଶନେ ମାଲ୍ୟ— ଗିରି ଗିରିବର
ବିସ୍ତାରଇ ହୃଦ କ୍ଷୁଦ୍ର ମାନବର ।
ତୋ-ଦେହେ ବିରାଜେ ପୂତ ଯଜ୍ଞ ସ୍ଥଳୀ
ନୃପ-ମୁନ୍ଦପାଳ— କୀର୍ତ୍ତି-ସ୍ତୂପେ ଝଳ ।
ଯେ ନରେନ୍ଦ୍ର ଅନୁ— ସନ୍ମାନ-ଚତୁର
ଲଭିଥିଲେ ପଦ ରାଜ ବାହାଦୂର ।
ଶୀତଳ ପବନ କରଣ ସଞ୍ଚାର
କରେ ତୋର ଅଙ୍ଗ ସୁବାସ ପ୍ରଚୁର ।

ସେ-ଶୀତ- ପବନେ    କରନ୍ତେ ବିହାର,
ଝାଙ୍କୁରିତ ପ୍ରେମ    ଦେହ ବାରମ୍ବାର ।
ପୁଣ୍ୟତେଜା ତୋର    ମହିମା ଅମାପ
ତୋ-ଶିଖରେ ନାହିଁ    ହିଂସ୍ରକ ପ୍ରତାପ ।
ବ୍ୟାଘ୍ର ଭଲ୍ଲୁକର    ବିକଟ ଗର୍ଜ୍ଜାଣୀ
ଦେଖି ନାହାନ୍ତି ତୋ—    ଉତ୍ତମାଙ୍ଗ-ପ୍ରାଣୀ
ଭୀଷଣ-ଭୁଜଙ୍ଗ—    ବିଷ ଜ୍ଞାନହଜା
ଜାଣି ନାହାନ୍ତି ତୋ—    ଶିଖର-ପରଜା ।
ଭାବୁ ଯଦି ତୁହି    ହୃଦୟ-ଆଗାରେ
" କେଅଛି ଗିରୀନ୍ଦ୍ର    ପ୍ରଶାନ୍ତ ସଂସାରେ " ?
"ତୁଇ " "ତୁଇ" ବୋଲି    ଟିପି (୧) ଗଗନରେ
ବଜାଣି ସଂଶୟ    ଉଡ଼ିଯାଏ କ୍ଷଣେ ।
ସଞ୍ଚରନ୍ତି କେବେ    କେବେ ତୋ—ଶିଖରେ
ସୂକ୍ଷ୍ମପୁଚ୍ଛ ମହା—    ବଳିଷ୍ଠ ସମ୍ବରେ ।
ତୁରଙ୍ଗ ଆକୃତ    ବୁଲନ୍ତି ଅବନ୍ଧା,
ରମନ୍ତି ଆନନ୍ଦେ,    ନାହିଁ ଭୟ ଧନ୍ଦା ।
ତୋ-ଶିଖରେ କେବେ    କେବେ ଗୁଣ୍ଡିତର
ଦେଖା ମିଳେ, ସ୍ୱର    ଶୁଭେ ସୁରୁଚର ।
ଅହା·କି ସୁନ୍ଦର    ଶୋଭେ ପୁଷ୍ପେ ଯାର
ସ୍ୱଧବ—ବାତ୍ସଲ୍ୟ—    କରାଙ୍ଗୁଳ-ଗାର ।

---

(୧) ଟିପି—ପକ୍ଷି ବିଶେଷ, "ତୁଇ" "ତୁଇ" ଶବ୍ଦ କରେ

ବସନ୍ତ-ବିକାଶୀ    ଅଶୋକ, ଶାଲ୍ମଳୀ
ଧାତକୀ, ପଲାଶ,    ପାଲଧୁଆକଳି ;
କାହାନ୍ତି ଏମାନେ    ଶିଖରେ ତୋ-ବଳେ,
ରହିଛନ୍ତି ଝଟି    ତୋ-ପାଦ-କମଳେ ।
ବସନ୍ତ-ବିଳାସୀ    ପିକ ଗାୟୁକର
ଅଶୁଣା ଅଛଣା    ଏଥି ମଧୁସ୍ୱର ।
ଯେ-ସ୍ୱର-ଶ୍ରବଣେ    ପଥିକ ମାନସ
ବରଜ ହରଷ    ଦୁଃଖରେ ବିରସ ।
ସ୍ମରଇ ପ୍ରେୟସୀ    କୋକିଳ ବଚନା,
ଭୁଞ୍ଜଇ ହୃଦୟେ    ଅସହ୍ୟ ଯାତନା ।
ହେ ଗିରୀନ୍ଦ୍ର ତୋର    ଉତ୍ତୁଙ୍ଗ ଶିଖର
ଶାନ୍ତ ଦେବୀଙ୍କର    ନିଳୟ ସୁନ୍ଦର ।
ଯୋଗଭଙ୍ଗଭୟେ    ତୋର ଏଥିପରି
ନ ଶୁଭଇ କାକ    ପ୍ରଭୃତ ଉପରି ।
ଶ୍ୟାମା ଶାରୀଙ୍କର    ବିମୋହନ ସ୍ୱର
ଭେଦ ନାହିଁ ଏଥି    ତୋ—ଶ୍ରୁତି—କୁହର ।
ଗିରିଙ୍କର ମଧ୍ୟେ    ତୁହି ଅନୁପମ,
ରୂପେ ଗୁଣେ ତୁହି    ଉତ୍କଳେ ଅସମ ।
ଉପରେ ଜଳଦ,    ନିମ୍ନେ ତୋର ଖରି,
ମଧ୍ୟରେ ବରଷା    ଅସରି ଅସରି ।
ଏଦୃଶ୍ୟ ଦର୍ଶନେ    ମନ ବିହ୍ୱଳିତ,
ହୃଦୁକେ ଆନନ୍ଦ    ଅପାର ଅମିତ ।

ବନ୍ଧପୂର କାହିଁ      ହୋଇଅଛୁ ଠିଆ
ବରଷା ସଲିଳ      ବିସ୍ତାରଣ ହୁଆ ।
ପ୍ରତପଙ୍କୁ ଚାହିଁ      ତପନ-କିରଣ
ଦିଶେ ଯଥା ଗିରି—      ବିନାଳ-ଦର୍ପଣ ।
କାହିଁ ବା ଶିଖରେ      ଶୁଭ୍ର ବାରିଧର
ସଞ୍ଚରଇ ସୁଖେ      ଦିଶଇ ସୁନ୍ଦର ।
ପୁଞ୍ଜି ପୁଞ୍ଜି ହୋଇ      ପିଞ୍ଜା ତୁଳାଧାଡ଼ି
ଥୁଅ କି ହୋଇଛି      ଚକ୍ରବାଳ ମାଡ଼ି ?
ନିମ୍ନଦେଶେ ତୋର      ସଜ୍ଜା ମେଘମାଳ
ଦିଶେ କି ସୁନ୍ଦର      ବିଶଦ, ବିଶାଳ ।
କ୍ଷୀର ଅମ୍ବୁଧିର      ସ୍ୱଚ୍ଛ ଊର୍ମ୍ମି—ରାଶି
ଠୁଳ କି ନାଚନ୍ତେ      ଚକ୍ରବାଳ ଗ୍ରାସି ?
ଅତୁଳ ଗିରୀନ୍ଦ୍ର      ତୋ-ବିଭବ-ବଳ ,
ସକଳ ଋତୁର      ତୁ ଆଶ୍ରୟ ସ୍ଥଳ ।
ପାଦ ଦେଶେ ତୋର      ନିଦାଘ ସମସ୍ତ
ଉଚ୍ଚ ଶୃଙ୍ଗେ ମୁହିଁ      ଶୀତରେ ଅଥୟ ।
କେବେ କଜ୍ଜଳାଭ      ଜଳଦ ଶାର୍ଦ୍ଦୂଳ
ଗର୍ଜ୍ଜିଅଣି ତୋର      ନିମ୍ନ ଶୃଙ୍ଗ ମୂଳ ।
ପ୍ରକାଶନ୍ତେ ବକ—      ବିକଟ-ଦନ୍ତାଳ
ଲୁଚନ୍ତି ଆକାଶେ      ଯାଏ ଅଂଶୁମାଳୀ ।
ଚପଳା-ଚମକେ      ବନ୍ଦେ ଝଞ୍ଜାନଳ,
ବର୍ଷଇ କରକା—      ବହୁଳ ସଲିଳ ।

ବାସବ-କୋଦଣ୍ଡ— ଅଭ୍ର ଜଳେ ସଜେ,
ଦର୍ଶନେ ଉପମା— ଦମ୍ଭ-ବଳ ଭଜେ ।
ଦେଖାଉ ନ ବଳ ତୋର ଗିରବାଣ ?
ଘନାବଳୀ ନଳୀ, ଭୁଲଣ କମାଣ ,
ବଜୁଲୀ ଜାମୁକା, ଷୁନନ୍ତ 'ହୁ' ଶବ୍ଦ ,
ଶୁଣି ଚତୁର୍ଦ୍ଦିଗ ଡରସେ ସ୍ତବ୍ଧ ।
ନୀରବ,ନିସ୍ତବ୍ଧ ଗିରସ୍ଥଳୀ ଯଥା
ଶୁଣେ ଅବଧାନେ ବଜ୍ରଅକ୍ଷାକଥା ।
ଏସମୟେ ଏକ ବଡ଼ନ୍ତ ଘଟନା
ଜନ୍ମାଇଲା ଚିତ୍ତେ ଅତୀତ—ଭାବନା ।
ଉତ୍ତୁଙ୍ଗ ଉପଳ— ସ୍ତୂପେ ବସି କ୍ଷଣେ
ଉଡ଼ନ୍ତେ ଶକୁନ ପଂକ୍ତୀ ଗଗନେ ;
ଉଚ୍ଛୁଳଲା ମୋର ହୃଦୟ-ସାଗରେ
ଅତୀତ-ସ୍ମରଣ— ଊର୍ମି ଖରତରେ ।
ତ୍ରେତାଯୁଗେ କପି— ବୀରଙ୍କ ଅଗ୍ରତେ
ବାବେଗୀ-ବଳୟ ମଳୟ-ପର୍ବତେ,
ଅବତରନ୍ତା କି ଶିଖରୁଁ ସମ୍ପାତି
ଝାଡ଼ି ପକ୍ଷଯୁଗ ପ୍ରସାରଣ କରି ।

 

ଧନ୍ୟ ଧନ୍ୟ ଅଟେ ନୃପ ଗଣେଶ୍ୱର
ତବ ରାଜ୍ୟ ଶୋଭା— ବାଣୀ ଅଗୋଚର ।
ନୀଳ ଅମ୍ବୁରାଶି— ନିନାଦ-ବଧିର
ନାହିଁ ଏଥି ଜଗ— ନ୍ନାଥଙ୍କ ମନ୍ଦିର ।

ଚନ୍ଦ୍ରଭାଗାତୀର— ସୈକତ-ବିଳାସୀ
ପ୍ରାଚୀନ-ଉତ୍କଳ— ଶିଳ୍ପିତା-ପ୍ରକାଶୀ,
ତବ ରାଜ୍ୟେ ନାହିଁ କୋଣାର୍କ ଦେଉଳ
ସ୍ରଷ୍ଟା ପଣ୍ଡଙ୍କର ନିବାସ ମଞ୍ଜୁଳ ।
ଏକାମ୍ର-କାନନ— ମଧ୍ୟେ ସମୁଜ୍ଜ୍ୱଳ
ଲଲାଟ କେଶରୀ— କୀରତ-ଧବଳ,
ଚାରୁ-କାରୁ-କାର୍ଯ୍ୟ— ଗୌରବେ ଅତୁଳ
ନାହିଁ ତ ଭୁବନ—ଈଶ୍ୱର ଦେଉଳ ।
ମାତ୍ର ତବ ରାଜ୍ୟେ ଏ-ମହା ଦେଉଳ
ଶିଶୁ-ହିମାଳୟ— ସମ ସୁମଞ୍ଜୁଳ ।
ନାହିଁ ନୃପ ଯାର ଉତ୍କଳେ ତୁଳନା
ଯା-ଛନ୍ଦ-ବର୍ଣ୍ଣନେ ଅଶକ୍ତ ରସନା ।
ଏ ମହା-ମନ୍ଦର— ଭ୍ରମର-ବାହକ
ଶୀତଳ ସମୀର ସୁଗନ୍ଧ ଦାୟକ ।
ସୁପରଶ୍ରୀରକା କାଦମ୍ବିନୀ ଯାର
ପାଦତଳେ ଏଠି କରଇ ବିହାର ।
କାଁସ ଘଣ୍ଟାଦର କୃତ୍ରିମ ବାଜଣା
ହୋଇଛି ଯଦ୍ୟପି ଏଠାରେ ଅଜଣା;
କିନ୍ତୁ ବିଶ୍ୱବ୍ୟାପି ଓଁକାର-ଧ୍ୱନିତ
ଏ-ମନ୍ଦିରୁଁ ସ୍ୱତଃ ହୁଏ ଉଚ୍ଚାରିତ ।

ଧନ୍ୟ ମାଲ୍ୟ ଗିରି ଧନ୍ୟ ଶୋଭାକର,
ଧନ୍ୟ ତୋ-ମହିମା, ବର୍ଣ୍ଣନେ ଦୁସ୍ତର ।

"ଶାସ୍ତ୍ର ନ ଥିଲେହେଁ   ତୋ-ନାମ କରଣ
ତୁହି ମାଲ୍ୟଗିରି   ତୀର୍ଥ ସନାତନ ।"
କେତେ କେତେ ତୀର୍ଥ   ନର-ସଂସ୍ଥାପିତ
ଡୁଇଁ ଏ ସଂସାର—   ସ୍ରୋତେ ଅସ୍ତମିତ ।
ଅସ୍ତ୍ରୋନ୍ମୁଖ ପୁଣି   କେତେ ତୀର୍ଥସ୍ଥାନ,
କିନ୍ତୁ ଚିରଦନ   ତୋ-କୀର୍ତ୍ତି ସମାନ ।
ମର-ନର-କୀର୍ତ୍ତି   ଦେବ ସିନା ମର,
ଅମର-ସୃଜିଲା—   ଜୀବନ୍ତ ଅମର ।
କାହିଁ ଆଜ ଦୁର୍ଗ   ଦୁର୍ଗ ବାରବାଟୀ ?
କାହିଁବା କୋଣାର୍କ—   ଶିଳ୍ପ-ପରିପାଟୀ ?
କାହିଁ ଇନ୍ଦ୍ରପ୍ରସ୍ଥ—   ନଗରୀ ଅଶଙ୍କା ?
କାହିଁ ବୈଶ୍ରବଣ—   ସ୍ୱର୍ଣ୍ଣମୟୀ-ଲଙ୍କା ?
ସରବେ କାଳର   କବଳେ ପତିତ
କିନ୍ତୁ ତୋର ଅଙ୍ଗ   ଚିର-ସୁଶୋଭିତ ।
ତରୁ-ଲତା-ନୀଳ   ତୋ-ବସ ସୁନ୍ଦର,
ଘନ-ଅସ୍ତରଣେ   ଦଶେ ନୀଳତର ।
ଭୀଷଣ ଝଡ଼ାଠ   ତୋ-ଖଣ୍ଡ-ପ୍ରସ୍ତର,
ବଜ୍ରାଘାତେ ତହିଁ   ବିଶୃଙ୍ଖଳତର ।
କୁରଙ୍ଗ ସଦୃଶ   ତହିଁ କ୍ଷିପ୍ରଗତି,
ସଞ୍ଚରନ୍ତ ସୁଖେ   ତୋ-ଅଙ୍ଗ-ଭୂପତି ।
ଧୈର୍ଯ୍ୟଶୀଳ, କଷ୍ଟ—   ସହି, ଯେସନ
ନୃପତି ଦ୍ୱାପରେ   ରବଙ୍କ ନନ୍ଦନ ।

ପାଦଦେଶୁଁ ତୋର ବକ୍ଷସ୍ଥଳ ଯାଏ
ନାନା ବୃକ୍ଷ ବନ— ଶ୍ରେଢ଼ ଶୋଭା ପାଏ ।
ଖଣ୍ଡ ଖଣ୍ଡ ତୋର ରୁକ୍ଷ ଶିଳା ରାଶି
ବିକ୍ଷିପ୍ତ, ବିଶୁଷ୍କ— ଶୈବାଳ-ବିଭାସୀ ।
ଉଭା ଦୃଷ୍ଟି-ଲେଖା— ସୀମା-ସ୍ତମ୍ଭ ଯଥା
ଗୃହାନ୍ତେ ନିରେଖି ଘୋଳ ହୁଏ ମଥା ।
କାହିଁ ଖଣ୍ଡେ ଖଣ୍ଡେ ପଡ଼ିଛି ପଥର,
ଅନ୍ୟ ପଙ୍କ ଭର ଯେସନେ କଳେବର ।
କାହିଁ ଚଢ଼ୁ କ୍ଷୋଣ ଶିଳା ସୁଚିକ୍କଣ
କରଇ ବିବାଦ— ବେଦୀର ହରଣ ।
ତୋର କଳେବର — ଦିବ୍ୟ-କାରୁଗର
ଶଚୀ-ପ୍ରାଣ-ନାଥ ତ୍ରିଦିବ-ଈଶ୍ୱର ।
ବଜ୍ରାଘାତେ ବଜ୍ର — ଧାଖି ଦଖି ଗୁହା
ସୃଜନ୍ତି ପ୍ରତ୍ୟହ ଏଥି ନୂଆ ନୂଆ ।
କାହିଁ ବା ବିଶାଳ ଫାଟିଲ ପ୍ରସ୍ତର
ପତନ-ଉନ୍ମୁଖ ମହା ଭୟଙ୍କର ।
ପ୍ରପାତ-ସଲିଳ— ପୁଷ୍ଟ-ଅଙ୍ଗ-ଅଳ ।
କି ସୁନ୍ଦର ପାନ୍ଥ— ବାନବୀ ଶିଅଳୀ (୧) ।
ଯାର ସୁମଞ୍ଜୁଳ କୁଞ୍ଜ-ଶଯ୍ୟା-ତଳେ
ବିଶ୍ରମନ୍ତି ସୁଖେ ପଥିକେ ଉପଲେ ।

---

୧ ଲତାବିଶେଷ ।

ପ୍ରପାତ-ପୂର୍ନିଷ୍ଟ— ଜଳେ ନାଶି ଶୋଷ
ତୃଷାତୁରେ ଯହିଁ ଲଭନ୍ତି ସନ୍ତୋଷ ।
କୁଞ୍ଜମଧ୍ୟେ ଯାର ବହଙ୍ଗ-ଦମ୍ପତି
ବିରଚି କୁଳାୟ ଭୁଞ୍ଜନ୍ତି ପୀରତି ।
କୁହୁ କୁହୁ ଶବ୍ଦେ ଡ଼ାକୁଁ ଡ଼ାକେ ଖସି
ଭାଷଇ ଦୟିତ ଦୟିତାକୁ ବସି ।
ସନ୍ଧ୍ୟା ସନ୍ଧ୍ୟ ଯହିଁ ଘଜେ ବୃକ୍ଷ ପତ୍ର,
ଦବଶେ କୁଞ୍ଜ ଯଥା ନୀଳ ଅତପତ୍ର ।
ତଦୁପରେ ବର୍ଷା— ବାରି-ଟପ ଟପ,
ଶ୍ରବଣେ ଅନନ୍ଦ ତତ୍ତ୍ୱେ ଅନଳପ ।
ଏରମ୍ୟ-ସୁଷମା— ଦେଖନ୍ତେ ନୟନ,
ସ୍ଥାନାନ୍ତରେ ଇଚ୍ଛା ନ କରଇ ମନ ।
ସୌର-କରୋଜ୍ଜ୍ୱଳ— ଭୁଙ୍ଗ ଉତ୍ତୁଙ୍ଗଶୃଙ୍ଗ,
ବନ୍ଧୋକନେ ଭାଙ୍ଗି ପଡ଼େ ବେକଷଣ୍ଢ,
ଭୁଜଙ୍ଗ-କୁଟିଳ-ଗତ ଗିରି ମାର୍ଗେ
ଆସିଲି ଓହ୍ଲାଇ ତହୁଁ କଷ୍ଟେ ଅଗେ ;
ଦେଖିଲି ସେଠାରେ ସୁଶ୍ୟାମଳ ନାସି (୧)
ବସୁନ୍ଧ- ଵାରଧି— ନୀରୋଦ୍ଧ୍ୱାସେ ଭାସି ।
ଭୀଷଣ ପାଷାଣ ଲତା ବିଜଡ଼ିତ
ନିମ୍ନମୁଖେ ଠାବେ ଠାବେ ସୁଶୋଭିତ ।

---

୧ ପତ୍ତନ ଇତି ।

ମୃତ୍ତିକାରୁଁ ଖସି ପଡ଼ିବାର ଶଙ୍କା
ଜନ୍ମାଇ ଗାର୍ଯ୍ୟକେ ସ୍ତିତ ନରଭଙ୍କା ।
ସେ ଦୃଶ୍ୟ ଦର୍ଶନେ ସାଧ୍ୱସ-ସଞ୍ଚାର ,
ଖଣ୍ଡେ ଦୂରେ ଯାଇଁ ହେଲି ଉଭାସାର !
କୁହେଳିକା ତହିଁ ଆସୁଅଛି ମାଡ଼ି
ନଜଦଳ ବଳ ସଗର୍ବେ ସଜାଡ଼ି ।
ଗୃହୁଁ ଗୃହୁଁ ଘୋଟି ଆସିଲା ଅନ୍ଧାର ,
ନରୋଧିଲା ବେଗେ ମୋ ଦୃଷ୍ଟି ପ୍ରସାର !
ଲାଗନ୍ତେ ଶୀକର— ଶୀତଳ ପବନ ,
ଥରଲି ବରଡ଼ା— ପତର ଯେସନ ।
ମାଡ଼ି ଆସୁଛି କି ନୀଳ ଅମ୍ବୁରାଶି
ସ୍ତର ସ୍ତର ହୋଇ ଆକାଶରେ ଭାସି ?
ସେକାଳେ ହୃଦୟ ଡ଼ହିଲ ବିକଳ ,
ସ୍ମରିଲି ଈଶ୍ୱର— ଚରଣ-କମଳ ।
ପ୍ରକୃତ-ସୁଷମା ଲୁଚିଲା ତରାସେ
ଅନ୍ଧାର ରାଜତ୍ୱ କଲା ଚଉପାଶେ ।
କିଛୁକ୍ଷଣ ପରେ ବ୍ୟାପିଲା ଆଲୋକ ,
ପଳାଇ ଅନ୍ଧାର ଗଲା କେଉଁ ଲୋକ !
ନବହଇ ଭବେ କାହା ବଡ଼ପଣ ,
ଗରବ ଗଞ୍ଜନ— ବାନା ନାରାୟଣ ।
ଜୟ ପରାଜୟ ଲାଗିଛି ସନ୍ତତ
ଘୂରୁଅଛି ଭାଗ୍ୟ ଚକ୍ରନେମିବତ ।

ଏକାଳେ ଗୃଧକ— ଶାବକ-ନନ୍ଦନ
ଆକର୍ଷିଲା ମୋର ସେ ଦଗେ ନୟନ ।
ଶୀତେ କମ୍ପୁଅଛି ତାର କଳେବର,
ପଡ଼ଇ ଗୁରୁଣ୍ଡି ରୁକ୍ଷ ଶିଳାପର ।
ତେରେଛା ଶିଳାରେ ବନ୍ଧୁକଷ୍ଟେ ବସେ,
ବସୁଁ ବସୁଁ ପୁଣି ଅଧୋଦେଶେ ଖସେ ।
କଷ୍ଟେ ଅବଶେଷେ ଦେଇ ଖଣ୍ଡି-ଉଡ଼ା
ଆରୋହିଲା ଏକ— ଖଗ-ତରୁ-ଚୂଡ଼ା ।
କ୍ଷଣେ ବସି ତହିଁ ପକ୍ଷ ଝାଡ଼ି ଝୁଡ଼ି
ବାପ, ମାଆ, ଦେଖି ପାଶେ ଗଲା ଉଡ଼ି ।

ସଜଳ-ଜଳଦ— ଅନ୍ଧକାର ମୟ
ଘୋର କି ଭୀଷଣ ଗିରୀନ୍ଦ୍ର ହୃଦୟ ?
ଗ୍ରୀଷ୍ମରେ କାଳକା ମହୀଷ-ସନ୍ତାପ
ନାଶି ଢଢରଇ ପ୍ରମୋଦ ଅମାପ ।
ଜଳଦ ଗର୍ଜ୍ଜନେ ଡରିସି ବାନର
ବର୍ଷିଲ ଦର୍ଶାଇ କରକା ସମ୍ବଳ ।
ଶତ ଶକ୍ରଧନୁ ପୂରଇ କୌତୁକେ,
କି ଦେବ ଗିରୀନ୍ଦ୍ର ତୋତେ ଯଉତୁକେ ?
ମେଘ-ଅନ୍ଧାରିତ ତୋ-ବକ୍ଷ-ଆକାଶେ
ନାଚଇ ଚପଳା ଦ୍ୟୁତି ପରକାଶେ ।
ସେ ଦିବ୍ୟ ନର୍ତ୍ତନେ କଳାପି-କଳାପ
ବର୍ଦ୍ଧି ତୈଙ୍କ ହର୍ଷେ କରନ୍ତି ଆଳାପ ।

ସେ ଧ୍ୱନି ଶ୍ରବଣେ ସଂଯୋଗୀ ସରସ ,
ବିଯୋଗୀ ହୃଦୟ ଦୁଃଖରେ ବିରସ ।
"କୋବା" "କୋବା" କାହିଁ ଡ଼ାକଇ ଡ଼ାହୁକ
ସ୍ୱରମଧେ ତାର ରଜେ କି କୁହୁକ !
ସେ ସ୍ୱର-ବ୍ୟାଜେ କି ଭୁଲି ଗିରିବର
ପଶୁରୁ ମୋ-ନାମ ଅଜ୍ଞାତ ଭୋଦ୍ୱର ?
ଜଳଦ ଶବଦେ କମ୍ପଇ ଅବନୀ
ଗିରି ଗର୍ଭୁଁ ଉଠେ ଶତ ପ୍ରତିଧ୍ୱନି ।
ତୋ-ଅର୍ଦ୍ଧଶଯ୍ୟାନ— କଲେଇ ପ୍ରସ୍ତର ।
ଦଶେ କି ବିରାଟ ଭୀମ କଳେବର !
ବଜ୍ରୀ-ବଜ୍ରାଘାତେ ଉଡ଼ି ସ୍ଥାନ ଛଡ଼ି ,
ପଡ଼ିଛି କି କେଉଁ ଗିରି ମୁଣ୍ଡୁଁ ମାଡ଼ି ?
ଅଳ୍ପଦୂରେ ତାର ରାଜେ ଗଦବର
ଧନ୍ୱନ୍ତରି (୧) ତୀବ୍ର— ବିଷ-ଦୋଷ- ହର ।
ସ୍ପର୍ଶି ତା-ଦେହ ବହନ୍ତେ ସମୀର ,
ପରିହରି ଦୋଷ ବିଶୁଦ୍ଧ ଶରୀର ।
ଠାବେ ଠାବେ ଶୋଭେ ସୁରମ୍ୟ ନିର୍ଝର ,
ଶୁଭଇ ଶବଦ ସଦା ଝର ଝର ।
ଯହୁଁ ପଡ଼ି ଜଳ ଚୂର୍ଣ୍ଣି ଶିଳାପରେ
ଉଠି ନାନାରଙ୍ଗେ ଉର୍ଦ୍ଧ୍ୱେ ଗତି କରେ ।

---

୧ ଗଛ ବିଶେଷ ।

ଜଳ କଣାପରେ    ରବିକର ପଡ଼ି
ସୃଜେ ଶକ୍ରଧନୁ    ତହିଁ ଘଡ଼ି ଘଡ଼ି ।
ମାନସ-ନୟନ—    ସୁନ୍ଦର ସେ ଛବି
କଳାପି-କଳାପ —    ଗର୍ବ-ହର-ପବି ।
ଦର୍ଶନେ ଦର୍ଶକ    ଆନନ୍ଦିତମନା
ଇନ୍ଦ୍ର ଲୋକେ ନାହିଁ    ସେ ଛବି-ତୁଳନା ।
ସୁନ୍ଦର କୁସୁମ    କେତେ ଅଜାଣିତ
ଫୁଟିବାରୁ ତୋର    ଅଙ୍ଗ ସୁବାସିତ ।
ଶୋଭନ୍ତି ଦିବସେ,    ଯେସନ ଗଗନେ
ଉଡୁପନ୍ତି ପୂର୍ତ୍ତି—    ଶଶାଙ୍କ-କରଣେ ।
ବିଶାଳ ଉପଳ    କାହିଁ ଠାବେ ଠାବେ
ବିଦୀର୍ଣ୍ଣ ସଲିଳ—    ଉତ୍ତାପ-ପ୍ରଭାବେ ।
ନିମ୍ନମୁଖ ଯେହ୍ନେ    ସୁଡ଼ଙ୍ଗ ଭୀଷଣ ,
ଅନ୍ଧକାର ଯହିଁ    କରେ ରାଜପଣ ।
ନୈସର୍ଗିକ ସେହି    ସୁଡ଼ଙ୍ଗ ନିକର
ଦେଖିନାହିଁ ବାରେ    ଦିବାକର କର ।
ବାସରେ ଉଲୂକ    ଯହିଁ ମଣି ରାତ
ବିବରେ ବିକଟେ    ବାୟସ ଅରାତ ।
ଶୁଣିଲେ ଭୈରବ    କର୍କଶ ସେ ଡ଼ାକ ,
ଉପୁଜଇ ହୃଦେ    ଘଣେ ଘଣେ ଦକା ।
କୁମ୍ଭାଟୁଆ ଖଗ    କାହିଁ ବା ରାବଇ ,
ବନଦେବୀଙ୍କର    ସମସ୍ତ୍ୟ କ୍ଷାପଇ ।

କାହିଁବା ନର୍ଝର ଗିରିର ଉଦରେ
ଝରଇ ଉପଳୁଁ ଉପଳେ ଝର୍ଝରେ ।
ପାଷାଣୁଁ ପାଷାଣେ ଲମ୍ଫ ଦେଇ ଖରେ,
ସ୍ରୋତେ କ୍ଷୁଦ୍ର କ୍ଷୁଦ୍ର ପ୍ରପାତ ନିକରେ ।
କରି ଶୁଣ୍ଡାକୃତି ସ୍ୱଚ୍ଛ ଜଳଧାର,
ଧରେ ନାନାରୂପ ମନୋ-ନେତ୍ର-କାର ।
ଅର୍ଦ୍ଧବାଟେ ଯାଏ ବର୍ତ୍ତୁଳ ଆକାର,
ତହୁଁ କ୍ରମେ କ୍ରମେ ବଢ଼ଇ ପ୍ରସାର ।
ବାୟୁବଳେ ପୁଣି ହୋଇ ଖଣ୍ଡ ଖଣ୍ଡ,
ପଡ଼ି ଶିଳାତଳେ ଗଡ଼େ ଲଣ୍ଡ ଭଣ୍ଡ ।
ତଟପାଶେ ତାର ତୃଣ ସୁଶ୍ୟାମଳ,
ଲୋଚନ—ରୋଚକ ସୁନ୍ଦର ଭୂତଳ ।
ନିକଟେ ତାହାର ଶୋଭଇ ପ୍ରଚୁର,
ଧନ୍ୱନ୍ତରୀ ପୁଣି ଅରଣ୍ୟ ଖର୍ଜ୍ଜୂର ।
ଠାବେ ଠାବେ କାହିଁ ଶୋହେ ଉଦୁମ୍ବର,
ଗଣ୍ଡି-ଗଣ୍ଡି ପେନ୍ଥା— ପେନ୍ଥା ଫଳଭର ।
(୧) ଘୋଣ (୨) ଘୋଣାକୃତି ବିଶାଳ ପାଷାଣ
ପଡିଅଛି ଠାବେ ଠାବେ ଅପ୍ରମାଣ ।
ସମୀର ସଙ୍ଗତେ ତହିଁ ବଂଶବନ
କରୁଅଛି ବହୁ— ମହିମା-ଗାୟନ ।

---

୧ ବସ୍ତ୍ର, ୨ ନାସିକା,

ଅକୃଢ ବିଶାଳ  କାହିଁ ଘଜେ ଶାଳ,
ଅଶନ, ପିଆଳ,  ପୁଣି  କେନ୍ଦୁମାଳ ।
ମାଧବୀ ଆଶ୍ରିତ  ବିଶାଳ ପିଆଳେ,
ଶୋଭଇ ମାଳତୀ  କାହିଁ  କେନ୍ଦୁମାଳେ ।
ନ ଲଭି ଆଶ୍ରୟ  ଶିଆଳୀ ସୁନ୍ଦରୀ
ଗଡ଼େ ଧରାତଳେ  କପାଳ ଆଦରି ।
ବନଦେବୀଙ୍କର  ସ୍ୱର୍ଣ୍ଣ ପେଣ୍ଡି ପରି
ଶୋଭେ ମୁଚୁକୁନ୍ଦ (୧)  ଦିବ୍ୟରୂପ ଧରି ।
ନାନା ବନସ୍ପତି—  ଶୋଭିତ ତୋ-ବନ
ଶୋଭେ ଯଥା ସ୍ୱର୍ଗେ  ନନ୍ଦନ କାନନ ।
ତୁଉଁ ତୁଉଁ ଶବ୍ଦେ  ଆଶ୍ରମି କନ୍ଦରା
ଡାକେ ବନ ବଧୂ  କାହିଁ ଚୁଚୁନ୍ଦରା ।
(୨)କୋଠରା କାହିଁ ବା  ଶାଲ୍ମଳୀ କୋଠରେ
କରଇ ମଧୁର  ସଙ୍ଗୀତ ସୁସ୍ୱରେ ।
ପଡ଼ନ୍ତି କାହିଁ ବା  ବୃକ୍ଷ ପାହାଡ଼ିଆ,
ଆଗ ନଖ ଯୋଡ଼ା  କରଅଛି ଠିଆ ।
ସୁତୀକ୍ଷ୍ଣ ମୁନିଆ  ସେ ନଖର ଦାଉ
ଅନୁଭବୀ ବିନା  କେ ବର୍ଣ୍ଣିବ ଆଉ ।
ଦେଖି ସେ ଉତ୍କଟ  ବିକଟ ମୂରତି
ହୃତକମ୍ପ ଉପୁଜେ,  ରୋମାଞ୍ଚିତ ମତି ।

---

୧ ପୁଷ୍ପ ବିଶେଷ ।  ୨ ପକ୍ଷୀ ବିଶେଷ ।

ପାଟକମରଥି ଚୂଳଥି ଗୋବରି
ତାଙ୍କୁ ଡାଳେ ତେଣେ ନ ପଡନ୍ତୁ ଧରି ।
ପରସ୍ପରେ କାହିଁ କରନ୍ତୁ ଲଢାଇ
ଛଳେ ପଡ ଦ୍ୱୋଇ ଗଡ଼ାଇ ଛଡ଼ାଇ ।
ବସିଅଛି ଝାମ୍ପି ଶ୍ୟେନ ଛରୁଡ଼ାଳେ
ସ୍ୱବଇ ବକଠେ ପଏ ଅନ୍ତରାଳେ ।
ପଡଲେ ସୁବିଧା ଝାମ୍ପି ନେବ ବେନ
ସାରବ କଳନ୍ଧ ଚରନ୍ଦନ ଧେନ ।
ଏକାଳେ ତାଙ୍କର ଊର୍ଦ୍ଧ୍ୱେ ଉଡ଼ି (୧)ଟିପି
"ଟୁଇ" "ଟୁଇ" ଛଳେ ଦେଲା ବାର୍ତ୍ତା ଟିପି ।
ତଥାପି ତାଙ୍କର ଛଳେ ଦୃଷ୍ଟି ନାହିଁ,
ଯୁଝନ୍ତି ନିର୍ଭୟେ ଭାରଭି ଦେଖାଇ ।
ନିତ୍ୟ ଏ ଜଗତେ ଭାରଭି ପଣିଅ
ଗ୍ଲବ ପ୍ରାଣ ସିନା ଅଟଡ଼ଇ ଦନଥି ।
ଜୀବନ ଅବଶ୍ୟ ବସ୍ତୁ ଉପାଦେୟ,
ସମର ପ୍ରାଙ୍ଗଣେ ମାଂସ ଯେହ୍ନେ ହେୟ ।
ମରୁ ଅବା ଜିଣୁ ଏ ଯୋଡ଼ଏ କଥା
ଭାରେ ନ ଜାଣନ୍ତି ଏଥିରୁ ଅନ୍ୟଥା ।
ଏସମୟେ ଶ୍ୟେନ ନେଲା ବେନ ଝାମ୍ପି
ପାଇଣି ସୁବିଧା ତୀକ୍ଷ୍ଣ ନଖେ ଚାପି ।

---

୧ ପକ୍ଷି ବିଶେଷ

ବେନ ମନ୍ଦାକାରେ   ତେଜିଲେ ପରାଣ
ବେନଙ୍କର ସମ   କାରନ୍ତୁ ପ୍ରମାଣ ।

ଧନ୍ୟ ମାଲ୍ୟ ଗିରି   ତୁ ସଙ୍ଗୀତମୟ,
ଶ୍ରବଣେ ନାଚଇ   ଆନନ୍ଦେ ହୃଦୟ ।

ମଧୁର ଗାୟକ   ବିହଙ୍ଗ କାକଳି
ଶୁଭଇ ଶ୍ରବଣ—   ସୁଧା—ରସାବଳୀ ।

ମେଖଳାରେ ତୋର   ପ୍ରପାତ-ସଙ୍ଗୀତ
ଶୁଣନ୍ତେ ମାନବ—   ମାନସ ମୁଦିତ ।

ମଧୁ ଚକ୍ରେ ତୋର   ପ୍ରସ୍ତରକୋଠରେ
ମଧୁପ ଗୁଞ୍ଜନ   ଜନ-ମନ ହରେ ।

ତରୁ ନିସ୍ତବ୍ଧତା—   ଗମ୍ଭୀର ସଙ୍ଗୀତ
ଶିଖରେ ତୋହର   ସଦା ବିରାଜିତ ।

ଦେଖନ୍ତେ ସେ ରମ୍ୟ   ଶୃଙ୍ଗ ତୋର ଚୂଳି
ସଂସାର ଜଞ୍ଜାଳ   ହୃଦ ଯାଏ ଭୁଲି ।

ଅଦୃଷ୍ଟ ସେଠାରେ   ଭବ ମାୟା କଳି,
ତହିଁ ନାହିଁ ପକ୍ଷି—   ମଧୁର-କାକଳି ।

କେବେ କେବେ ଝଞ୍ଜା—   ପବନ-ନିସ୍ୱନ
କରୁଥାଏ ତାର   ମହିମା କୀର୍ତ୍ତନ ।
ଝିଲ୍ଲିକା ଶବଦେ   କେବେ ବା ମୁଖର
ହେଉଥାଏ ସେହି   ନିସ୍ତବ୍ଧ ଶିଖର ।

ଆଧ୍ୟାତ୍ମିକ ବାୟୁ— ମଣ୍ଡଳ ନିର୍ମଳ,
ପଶି ନାହିଁ ତହିଁ ଭବ-ମୋହ-ମଳ ।
ଉତ୍ପୂଜଇ ଭାବ ସତତ ସାତ୍ତ୍ୱିକ,
ଅଜ୍ଞାତ ସେଠାରେ ରଜ୍ଯ ତାମସିକ ।
ରାଜସ ତାମସ ଚିନ୍ତାର ଅଘାତେ
ଦେଖା ନାହିଁ ବାରେ ପବନ ସେ ବାତେ ।
ରୋମାଞ୍ଚ ପୂରିତ ଝାଙ୍କୁରିତ ଦେହେ
ଭ୍ରମନ୍ତେ ସେ ସ୍ଥାନ ମୁହିଁ ଅତି ସ୍ନେହେ;
ଅନାହ୍ଵ ପରମ ଅଶବ୍ଦ ନିନାଦ
ଧ୍ୟାନ କର୍ଣ୍ଣେ ମୋର ଦେଲା ଏ ସମ୍ବାଦ ।
" ନଭୂଲ ନଭୂଲ ଅଜ୍ଞାନ ଅନ୍ଧାରେ,
ଦିଅ ଦୃଷ୍ଟି ବତ୍ସ ! ଜ୍ଞାନାଲୋକେ ବାରେ ।
ଛାଡ଼ ଛାଡ଼ ମନୁ ସଂସାର ଜଞ୍ଜାଳ,
ରହିବୁ ଏପରି ଆଉ କେତେ କାଳ ?
ଧନ, ରତ୍ନ, ମାତା, ପିତା, ବନ୍ଧୁ, ଭାଇ,
ନିଧନେ ତୋ-ସଙ୍ଗେ ନ ଯିବେ ଗୋଡ଼ାଇ ।
ମୁହୂର୍ତ୍ତି ତୋହର ସମ୍ବଳ ପ୍ରାଣର
ଆଉ ସବୁ କଥା ଅଟଇ ଦନର ।
ରହିବ କି ତୋର ଏହି କଳେବର ?
ରହିବ କି ତୋର ଏ ପାଷାଣ ଘର ?
ଏଣେ ତେଣେ ଭୁହି ବୁଲୁଛୁ କିମ୍ପାଇ ?
ଭବପ୍ରଲୋଭନମଧ୍ୟେ ହୋଇ ବାଇ ।

ଭକ୍ତି ପୂତମନେ ଯେମନ ମୋ-ଆଶ୍ରୟ
(୧) ବଦୃଭବ ତୋର ଭବ ଦୁଃଖ ଭୟ । ”

ବଂଶ କୁଞ୍ଜ ପୁଞ୍ଜ— ଶୋଭିତ ମେଖଳା
ଦେଶେ ନୀଳପଟ୍ଟ ଯେସନେ କଟିଗଲା ।
ପଦ୍ମ ରାଗ ବୃନ୍ତ— ସ୍ଫଟିକ ମାଳକା
ଶୋଭେ ସୁକୁମାରୀ କାହିଁ ଶେଫାଳିକା ।
ସ୍ତବକ ଭରଜେ ଅଶୋକ ବ୍ରତତୀ
ନତମୁଖୀ କାହିଁ ଯେସନେ କୁଳବତୀ ।
ଶୃଙ୍ଗ ପରେ ଶୃଙ୍ଗ ଶୃଙ୍ଗ ତା-ଉପରେ,
ବିରାଜିତ ସ୍ତରେ ସ୍ତରେ ଗଗନରେ ।
ନୀଳ କଟି ତୋର ସୁସଙ୍ଗୀତମୟ,
ପୁଲକ ଉଠଇ ଶ୍ରବଣେ ହୃଦୟ ।
ବସନ୍ତବିଳାସୀ ପିକଗାୟକର
ଶୁଭିଲା ଏଠାରେ ସୁମଧୁର ସ୍ୱର ।
ଲଳିତ ପଞ୍ଚମ ମଧୁର ସଙ୍ଗୀତ,
ହୃଦ ଯନ୍ତ୍ରେ ମୋର ସେ ପ୍ରତିଧ୍ୱନିତ,
ଘାଞ୍ଚି ଦେଲା ମନ ସ୍ମର ଗୃହ କଥା,
ସଂସାର ଜଞ୍ଜାଳ ଘୁରିଲା ମଥା ।
ଲଭୁଥିଲି ସ୍ୱର୍ଗ— ସୁଖ ମୁଁ ଉପରେ,
ପଡ଼ିଲି ଏଥର ସଂସାର ଭିତରେ ।

---

୧ ବଦୃଭବ ଦେବ ।

ଶାନ୍ତ ଦେବୀଙ୍କର ଚର ନିକେତନ
ଉର୍ଦ୍ଧ୍ୱେ ନ ଥିଲା ଏ— ସ୍ୱର ବିମୋହନ ।
ସୁଧାଫଳପ୍ରସୂ ଧବଳ ପୁଷ୍ପିତ
(୧) ଘୁରୁଡ଼ୁ ଉପରେ ନ ଥିଲା ବିଦିତ ।
ନ ଥିଲା ସେଠାରେ ପାଦପ ରସାଳ ,
ଶୋଭନ୍ତ ଏଠାରେ ଏବେ ମାଳ ମାଳ ।
ଶିମୁଳୀ , ପାଟଳୀ , ଧାତକୀ , ପଳାଶ ,
କରନ୍ତ ଏଠାରେ ଶୋଭା ପରକାଶ ।
କାହିଁ ଶୁଷ୍କ, ଦଗ୍ଧ , କାହିଁ କଞ୍ଚା ପତ୍ର ,
କାହିଁ ବାଳ ଡାଳ- ଖଣ୍ଡ-କରପତ୍ର ।
ଛନ୍ଦା ଛନ୍ଦ କାହିଁ ଲତାପରେ ଲତା ,
ଦେଖାନ୍ତ ବନ୍ୟସ୍ତ୍ରୀ- କ୍ରୀଡ଼ା-ଚପଳତା ।
ବାତ୍ୟା ଆନ୍ଦୋଳିତ କପଳପୁଞ୍ଜରେ
ଡାକନ୍ତ କି ଅବା ପଥଶ୍ରାନ୍ତ ନରେ ?
ଫଳ ପୁଷ୍ପ ଦାନେ ତୋଷିବାକୁ ମନ
ଛାୟା ତଳେ ଦେଇ ଅଶ୍ରାନ୍ତନିକେତନ ।
କାହିଁ ତରୁ ଗୁଳ୍ମ- ଲତା ଜଡ଼ା ଜଡ଼ି
ମିଶାମିଶି ମଞ୍ଜୀ- ତଳେ ଗଡ଼ାଗଡ଼ି ।
ଠାବେ ଠାବେ କାହିଁ ଶିଂଶପା ପିଆଳ ,
ଅଶନ ମହୁଲ , କୁସୁମ , ତମାଳ ।

---

୧ ବୃକ୍ଷବିଶେଷ ।

କଟି ତଟେ ତୋର        ପୁଷ୍ପିତ କିଁଶୁକ
ଦଶେ ଯେସନେ ବନ—    ଦେବୀ-ରକ୍ତାଁଶୁକ ।
ତୋର ନାଗେଶ୍ୱର—    ବଣୀ ମନୋହରୀ
ତା-ରୂପ-ଭାବନା        କବିହୃଦନସରୀ ।
ମାନସ ଚକୋର—    ସୁଧାବ୍ଧି ପ୍ରକାର
ଶୋଭା, ନେତ୍ରମୀନ-        ବଡ଼ଶୀ ତାହାର ।
ଯହିଁ ବିହରନ୍ତି        ଦେବ ଉମେଶ୍ୱର
ବଶ୍ରୀଭସ୍ମ ଦାମୀ        ପିନାକୀ ଶଂକର ।
ସମୀରଣ ତହିଁ        ବହି ପରିମଳ
ମନ୍ଦମନ୍ଦେ ଖଟେ        ତୋ-ଅଙ୍ଗ ଶୀତଳ ।
ବାୟୁରଥେ ତହିଁ        ଜଳଦ ସମଳ
ଦର୍ଶନେ ଉପମା        ଭବେ ଅସୁକର ।
ପୁଚ୍ଛ ଟେକି ବର୍ହୀ        ସଜ୍ଜ ହୋଇ ଠିଆ
ଶକ୍ର ଚାପ ଦଶେ        କି ଚକଚକିଆ ?
ଟୋପ ରତ୍ନସମ        ତହିଁ ଘନରତ୍ନ,
ଜଳଧାରୀ ଶରେ        ପଡୁଛନ୍ତି ଝଡି ।
ଡାହୁକର ପୁଣି        ମଧ୍ୟେ ଶାର ଡାକ
ଶ୍ରବଣେ ଦର୍ଶକ        ହୃଦୟ ଅବାକ ।
କାହିଁ ଗୁଞ୍ଜତରୁ        ଅଭ୍ରଲିହ ଗଗନେ,
ଫଳ ପୁଷ୍ପ ତାର        ଯେସନ ରତନେ ।
ତୋର ସୁମଞ୍ଜୁଳ        ବ୍ରତତୀ ନିକୁଞ୍ଜେ
ଗୁଣୁ ଗୁଣୁ ସ୍ୱରେ        ମତ୍ତ ଅଳି ଗୁଞ୍ଜେ ।

ନବ ପଲ୍ଲବିତ    କେନ୍ଦୁ ବୃକ୍ଷ ପନ୍ତ
କି ସୁନ୍ଦର ଦିଶି    ଧରଣୀ ମଣ୍ଡନ୍ତ ।

ଲାବଣ୍ୟବିସ୍ତାର    କରତଳୋପମ
ପତ୍ରାବଳୀ ତହିଁ    ରାଜେ ମନୋରମ ।

ଦର୍ଶନେ ମାନସେ    ବଢ଼ଇ ପୀରତି,
ଆନନ୍ଦ ବାରିଧି—    ମଗ୍ନ ହୃଷ୍ଟ ମତି ।

ଗଣେଶ୍ୱର ନୃପ—    କୀରତ୍ତି- ନିର୍ଝର
ପ୍ରାନ୍ତେ ଦଶେ ତୋର    ମାର୍ଗ ମନୋହର ।
ତୃଣ-ସୁଶ୍ୟାମଳ    ତୋ-ଦେହ ଉପରେ
ଇନ୍ଦ୍ର ନୀଳେ ରୌପ୍ୟ—    ହାର ପର ଝୁଲେ ।

“ ଉତ୍ତମ ଶ୍ଳୋକର    ପୁଣ୍ୟ ସଙ୍କୀର୍ତ୍ତନ ”
କରୁ ନିତ୍ୟ ତୁହି    ଶଇଳ ରାଜନ !
ସେ କୀର୍ତ୍ତନେ ଦ୍ୟନ୍ତ    ଯୋଗ ଚରାଚରେ
ଦେବଧାମୁଁ ଆସି    ଗାବନ୍ତ ଅମରେ ।

ସମଙ୍ଗ ବାସିନୀ    ଦେବୀ ରାମଚଣ୍ଡୀ
ଗାବନ୍ତ ସଙ୍ଗୀତ    ଭବଭୟ ଖଣ୍ଡି ;

ଜ୍ୟୋସ୍ନା ଧବଳିତ    ସମଙ୍ଗ ତରଙ୍ଗେ
ରଚନ୍ତ ଯେ ନାବ—    କେଳି ନାନାରଙ୍ଗେ ।

ହରଚଣ୍ଡୀ ଦୈତ୍ୟ—    କୂଳ ବିନାଶିନୀ
ନୃସିଂହ ପାଟନା—    ବନ୍ତ-ନିବାସିନୀ,

ଚନ୍ଦ୍ରାଲୋକେ ଯେହ୍ନେ    ବାଲ୍ୟସ୍ତୁପେ ଖେଳା
କରନ୍ତି ସଙ୍ଗତେ    ଦେବୀ ମେଳା ମେଳା ।
ଅଭୟ ଦାୟିନୀ    ଶ୍ରୀକ୍ଷେତ୍ର ଈଶ୍ୱରୀ
ବିମଳା, ଦକ୍ଷିଣ—    କାଳୀ ସର୍ବଚରୀ,
କେଶରୀ ବାହନେ    ଅତୁଳ ବିକ୍ରମା
ବିରଚ ନଗୀଥେ    କ୍ଷେତ୍ର-ପରିକ୍ରମା,
ଦେଖନ୍ତି ଯେ ନିତ    ନୀଳାର୍ଣ୍ଣବ ଖେଳା
ସ୍ୱର୍ଗ (୧) ଦ୍ୱାରେ, ଯହିଁ    ବୃନ୍ଦେ ରବ ଭେଳା ।
ବିପଦ-ଅଭୟ—    ଦାୟିନୀ ଶଙ୍କରୀ
ବାଙ୍କୀ ଅଧିଷ୍ଠାତ୍ରୀ    ତ୍ରିପୁର ସୁନ୍ଦରୀ;
ବନ୍ଦାରୁ ମାନସ—    କୁମୁଦ-ଚନ୍ଦ୍ରିକା
ମହାନଦୀ-ତୀର—    ବାସିନୀ ଚର୍ଚ୍ଚିକା ।
ରଣପୁରେଶ୍ୱରୀ    ମୈନାକ (୨) ବାସିନୀ
ଚଣ୍ଡ-ମୁଣ୍ଡ-ଶୁମ୍ଭ—    ନିଶୁମ୍ଭ- ନାଶିନୀ ।
ରଣ ପୁର ଶାଢ଼ୀ    ଯାର ପରିଧାନ
ଲଲାଟେ ସିନ୍ଦୂର—    ବିନ୍ଦୁ ଶୋଭମାନ ।
ଗୁବାକ ନିକୁଞ୍ଜ—    ମନ୍ଦିର ବସତି
ବାଣ ପୁରେଶ୍ୱରୀ    ଦେବୀ ଭଗବତୀ ;
ଦେଖନ୍ତି ଯେ ମୁଖ    ଶାଳଅ (୩) ମୁକୁରେ
ଘଣ୍ଟା (୪) ଶିଳା ଶିରେ    ବସି ଚନ୍ଦ୍ରାଂଶୁରେ ।

---

୧ ପର୍ବତର ସନ୍ନିକଟବର୍ତ୍ତୀ ସ୍ଥାନ ବିଶେଷ, ତାହାର ନିକଟରେ ଏହି ଶୃଙ୍ଗ ନ
୨ ରଣପୁର ପର୍ବତ, ୩ ବାଣପୁରର ନଦୀ, ୪ ବାଣପୁରର ପର୍ବତ

ବିକଟ ସଙ୍କଟ— ତାରଣୀ ସାରଳା<br>
ଝଙ୍କଡ଼ ଈଶ୍ୱରୀ ଭକତ ବତ୍ସଳା ।<br>
ଦେବୀ କାଳି ଜାଇ ଅଭଙ୍ଗ ନାଶିନୀ<br>
ଚିଲଙ୍କି ଭୂଷଣ ମଞ୍ଜୁଳ ବେଶିନୀ,<br>
ଚିଲିକା ତରଙ୍ଗ— ସ୍ନିଗ୍ଧ ବକ୍ଷ ପରେ<br>
ଦେଖନ୍ତି ଯେ ନାନା- ଦୃଶ୍ୟ ଚନ୍ଦ୍ରକରେ ।<br>
ଯଯାତି କେଶରୀ— ବାଞ୍ଛା-କଳ୍ପଲତା<br>
ଯାଜପୁରେଶ୍ୱରୀ ବିରଜା ଦେବତା ।<br>
ଚନ୍ଦ୍ରଭାଗା-ତୀର— ସୈକତ-ବିଳାସୀ,<br>
ଦେବ ଅଂଶୁମାଳୀ କୋଣାର୍କ ନିବାସୀ ।<br>
ନବଘନକାନ୍ତି ମୁରଲୀ ଅଧର<br>
ଭାଲେ ଶୋଭେ ଗୁରୁ ଟିକା ମନୋହର,<br>
ତ୍ରିଭଙ୍ଗି ମୂରତି ବସୁ ଦେବ ବାଳ<br>
ସତ୍ୟବାଦୀଶ୍ୱର ଶ୍ରୀସାକ୍ଷୀ ଗୋପାଳ ।<br>
ଏ ଆଦି ଦେବତା— ଗଣ ଏଥି ଆସି<br>
କରନ୍ତି କୀର୍ତ୍ତନ ମହାନନ୍ଦେ ଭାସି ।<br>
ମାର୍ଦ୍ଦଳିକ ଏଥି ଜୀମୂତ ପଟଳୀ,<br>
ହୀରକ ମସାଲ ନକ୍ଷତ୍ର ଅବଳୀ ।<br>
ରୂପେ ରତିକ୍ଷଣା ପରମା ସୁନ୍ଦରୀ<br>
ଏ କୀର୍ତ୍ତନେ ତାଳ ପକାନ୍ତି ଅପ୍ସରୀ ।<br>
ବ୍ୟୋମକେଶ ଏଥି ମୃଡ଼ାଣୀ ସଙ୍ଗତେ<br>
କରନ୍ତି ତାଣ୍ଡବ ସୁଖେ ନାନା ମତେ ।

ବାୟୁ ସଙ୍ଗେ ଠାବେ ଠାବେ ପ୍ରବାହିତ
ସେ କୀର୍ତ୍ତନ ଧ୍ୱନି ହୁଅଇ ଧ୍ୱନିତ ।
ଅଷ୍ଟାପଦ ପ୍ରସୂ ଚୂଷ ଅଙ୍କାରୁଅ
ଭୁଜଙ୍ଗ ଗାମିନୀ ନଦୀ (୧) କଷାରୁଅ ।
ଗଣେଶ୍ୱର ନୃପ— ସ୍କନ୍ଧାନ ଉପଲେ
ସେ ଦିବ୍ୟ ସଙ୍ଗୀତ ଘୋଷେ କଲକଲେ ।
ସନ୍ଧକାର କୁଞ୍ଜ— ସୁମଞ୍ଜୁଳ ତୀର
ପାଷାଣ ମାଳିନୀ ବ୍ରାହ୍ମୀ ସ୍ୱଚ୍ଛନୀର ।
ଗାବେ ସେ କୀର୍ତ୍ତନ ହର୍ଷେ ଉର୍ମିଛାଳେ
କଶୋର ଭୂପାଳ— ଖାରସିଂହ ଦ୍ୱାରେ ।
ଖଣ୍ଡିତିରଦଶୀ— ସୁନ୍ଦର ଉଦରେ
ମାରୁତ ସଙ୍ଗତେ ସେ ଧ୍ୱନି ସଞ୍ଚରେ ।
ମହାନନ୍ଦେ ଗାଏ ନୀଳ ପାର୍ବାର
ଗାୟତ୍ରୀ ଛନ୍ଦେ ସେ ସଙ୍ଗୀତ ଉଦାର ।
ଗାବେ ମହାନଦୀ କଲକଲ ସ୍ୱରେ
ସେ କୀର୍ତ୍ତନ ଧ୍ୱନି ମହାନନ୍ଦଭରେ ।
" ମରାଳ ମାଳିନୀ ନାଳାମ୍ବୁ ଚଳିକା "
କବି ରାଧାନାଥ କଳପ ବର୍ତ୍ତିକା ।
କାଳୀଜାଇ ଗଣ୍ଡ ଶଇଳ ନିକଟେ
ଉର୍ମିଧ୍ୱନିଛଳେ ସେ କୀର୍ତ୍ତି ପ୍ରକଟେ ।

---

୧ ପାଳଲହଡ଼ାର ନଦୀ.

ଏସନ ତୁ ଭୁଞ୍ଜୁ ନିତ୍ୟ କୀର୍ତ୍ତିସୁଖ ,
ନାହିଁ ତୋର ହୃଦେ ଭବ ବ୍ୟାଧି ଦୁଃଖ ।
ନାହିଁ ତୋ-ଶରୀରେ ଜରା ଅବିର୍ଭାବ ,
ପ୍ରଦର୍ଶଇ ସଦା ଯୌବନ ପ୍ରଭାବ ।

କେତେ କେତେ କୀର୍ତ୍ତି— ଶାଳୀ ନୃପବର ,
କେତେ ରାଜଧାନୀ କେତେ ବା ନଗର ।
କାଳ ନିଷ୍ଠୁର କୃତାନ୍ତ କବଳେ ,
ତାଙ୍କର ତୁ ସାକ୍ଷୀ ଅଛୁ ଏ ଉତ୍କଳେ ।

ତରୁ ଲତା ଗୁଳ୍ମ ଘେରି ସୁଶ୍ୟାମଳ ,
ମାରକତ ସ୍ତୂପ ପ୍ରାୟେ ଢଳ ଢଳ ।
ଦୂରେ ଦେଖିଲେ ତୋ-ରୂପ ମନୋହର ,
ନ ଯିବ ପାସୋରି ହୃଦୁଁ ଭାବୁକର ।

ସକଳ ଶୋଭାର ତୁ ଆଶ୍ରୟ ସ୍ଥଳ,
ଭକ୍ତ ସୁରଙ୍କର ଅମୂଲ୍ୟ ସମ୍ବଳ ।

ଭ୍ରମିଛୁ ବହୁଶଃ ନୀଳାର୍ଣ୍ଣବତଟେ ,
ଚଢ଼ିଛୁ ଲହରୀ— ଲୀଳା ହୃଦପଟେ ।
ତରଙ୍ଗ ଉପରେ ତରଙ୍ଗ ଉତ୍ଥାନ ,
ତଦୁପରି ଫେନ— ପୁଞ୍ଜ ଶୋଭମାନ ।

ଦୂରେ ଦିଶୁଅଛୁ ସିନ୍ଧୁ କଳେବର ,
ମିଶିତ ସୁନୀଳ ଗଗନେ ସୁନ୍ଦର ।

ଭ୍ରମଇ ବୋଇତ    ନୀଳ ବକ୍ଷେ ଯାର ,<br>
ଢଳି ଉର୍ମିଙ୍ଗିଲେ    କରନ୍ତି ବିହାର ।<br>
ତାଳପତ୍ର ଟୋପି    ପିନ୍ଧଣ ଚୂଳଅ ,<br>
ଘେପା ଜାଲ ଯହିଁ    ପକାନ୍ତି ନୋଳିଆ ।<br>
ଦିଶୁଥାଏ ଖାଲି    ଟୋପି ଟି ତାଙ୍କର ,<br>
ଜଳେ ବୁଡ଼ିଥାଏ    ସର୍ବ କଳେବର ।<br>
ଚନ୍ଦ୍ରାଲୋକେ ପୁଣି    ବାରିଧି ସୈକତେ ,<br>
ଭ୍ରମିଛୁ ସାନନ୍ଦେ    ସଙ୍ଗୀଙ୍କ ସଙ୍ଗତେ ।<br>
ଶୁକ୍ତି ତାରକିତ    ସୈକତ ପ୍ରଦେଶ ,<br>
ଦର୍ଶନେ ହୃଦୟେ.    ଆନନ୍ଦ ବିଶେଷ ।<br>
ଚନ୍ଦ୍ରକର ଲଭି    ସ୍ଫୀତ ନୀଳାର୍ଣ୍ଣବ ,<br>
ଗର୍ଜ୍ଜଇ ଭୀଷଣେ    ଦେଖାଇ ବିଭବ ।<br>
ଦେଖି ସେ ସୁଷମା    ଚିତ୍ତ ବିହ୍ୱଳିତ ,<br>
ବିଭୂଙ୍କ ମହିମା    ସୁନ୍ଦର ଚିନ୍ତିତ ।<br>
ବୁଡ଼ିଗଲା ମୋର    ସଂସାର ଜଞ୍ଜାଳ ,<br>
ସେ ଆନନ୍ଦ ସିନ୍ଧୁ—    ନୀରେ କ୍ଷଣକାଳ ।<br>
ଖଣ୍ଡଗିରି ଆଦି    ସୁରମ୍ୟ ପାହାଡ଼ ,<br>
ବିରାଜଇ ଯହିଁ    ଐର କୀର୍ତ୍ତି ବାଡ଼ ।<br>
ଦେଖି ଅଛୁ ତହିଁ    ଭ୍ରମି ଗୁମ୍ଫା ଚୟ ,<br>
ଯୋଗୀ ଜନଙ୍କର    ଉଚିତ ନିଳୟ ।<br>
କେତେ କଳା, ଧଳା,    ଲୋହିତ, ହରିତ,<br>
ବିହଙ୍ଗମେ ଦେଖି    ମାନସ ମହିତ ।

ଉଭା ହେଲା ବେଳେ     ସେ ଗିରି ଶିଖରେ ,
ଦେଖିଲି ବାଷ୍ପୀୟ     ଯାନ ଗଡ଼କରେ ।
ବାୟୁ ବେଗେ ଗତି     କରଇ ପ୍ରଖର ,
ଦଶେ ଧୂମରେଖା     ସରୁ ମନୋହର ।
ତା ଦେଖି ହୃଦୟେ     ଆନନ୍ଦ ଅମାପ ,
ଦଶେ ଦୂରୁଁ ଯଥା     ତେଲୁଗୁଣୀ ସାପ ।
ଭ୍ରମି ଅଛୁ ପୁଣି     ରାଜାଙ୍କ ଶାସନେ ,
ପୁନ୍ନାଗ ପନସ     ଶ୍ୟାମଳ କାନନେ ।
କଳ କାଳ କଲ୍ପ     ଦ୍ରୁମ ନାରିକେଳ ,
ରଚଇ ଆନନ୍ଦେ     ଯହିଁ ନାନାଖେଳ ।
ବିପ୍ରଗଣ ଯହିଁ     ରାଜ ପ୍ରତିଷ୍ଠିତ ,
ବିଭୁ ପାଦ ପଦ୍ମ—     ପରାୟଣ ଚିତ୍ତ ।
ପୁଣି ଦେଖି ଅଛୁ     ପାଠ ଯେ (୧) ସମଙ୍ଗ ,
ସୁଷମା ଦର୍ଶନେ     ରୋମାଞ୍ଚିତ ଅଙ୍ଗ ।
ଲଭି ମୃଦୁ ମୃଦୁ     ଗନ୍ଧବହସଙ୍ଗ ,
ନାନାରଙ୍ଗେ ଯହିଁ     ଖେଳଇ ତରଙ୍ଗ ।
ତଥିପରେ ଜରା—     ଜୀର୍ଣ୍ଣ ରବ ଛବ ,
ଦର୍ଶନେ ମାନସେ     ବିସ୍ମାହତ କବ ।
ପାଣ୍ଠ କ ପିନ୍ଧିଛି     ପୀତ ଜରୀ ପାଠ ,
ଦର୍ଶନେ ଉନ୍ମୁକ୍ତ     କଳ୍ପନା କବାଟ ।

---

(୧) ଶ୍ରୀ କ୍ଷେତ୍ରର ନିକଟବର୍ତ୍ତୀ ଶାସନ ଦାମୋଦର ପୁରର ସମ୍ମୁଖସ୍ଥ ହ୍ରଦ ବିଶେଷ ସମଚଣ୍ଡୀ ଯାହାର ଅଧିଷ୍ଠାତ୍ରୀ ଦେବତା ।

କିବା ଶୋଭା ଦେଖି ବିଶ୍ରାମ କାରଣେ ,
ପାଠ କି ହୋଇଛି ଛିଅଣି କାଞ୍ଚନେ ।

ଚନ୍ଦ୍ରାଲୋକେ ଶୁଭ୍ର ଦିଶଇ ସେ ପାଠ ,
ଯେସନେ ରସାତଳ ରଜତ କବାଟ ।

ପିନ୍ଧିବାକୁ ଅବା ରୂପା ଜରି ଶାଢ଼ୀ ,
ସଜାଡ଼ି ରଖିଛି ବସୁମତୀ କାଢ଼ି ।

ଅବା ସୁର ନାରୀ ବିଳାସ ଦର୍ପଣ ,
କହ କି ବହୁଛି ରଜତ ବରଣ ?

ତାର ତୀରେ ମୋର ଜନ୍ମ ନିକେତନ ,
ଦାମୋଦର ପୁର ବ୍ରାହ୍ମଣ ଶାସନ ।

ଉମା ସହ ଯହିଁ ଅଖଣ୍ଡଲେଶ୍ୱର ,
ବିରାଜନ୍ତି ପ୍ରଭୁ ଭକ୍ତ ଦୁଃଖହର ।

ତୋଷଇ ବିକସି ପ୍ରାବୃଟେ ମାଳତୀ ,
ଦିବ୍ୟ ପରିମଳେ ଯହିଁ ଉମାପତି ।

ବସନ୍ତେ ମାଧବୀ— ନିକୁଞ୍ଜ ଦୋଳାରେ ,
ଚନ୍ଦ୍ରାଲୋକେ ଯହିଁ ନିଶୀଥ ବେଳାରେ ।

ବନ୍ଦାରୁ ମନ୍ଦାର ଯହିଁ ଉମାଧବ ।
ବିହରନ୍ତି ଦୀନ— ଅନାଥ-ବାନ୍ଧବ ,

ଅହା କି ସୁନ୍ଦର ବକୁଳ ବେଦିକା
ଦର୍ଶନେ ଘୁଞ୍ଚଇ ଭବ ଅନ୍ଧମିକା ।

ଶୋଭଇ ନିକଟେ   ସୁରମ୍ୟ କାସାର ,
ରମ୍ଭା ନାରିକେଳ   ଚଉପାଶେ ଯାର ।
ଦେଖି ଅଦ୍ଭୁତ ଦୃଶ୍ୟ   କେତେ ଏହିପର ,
ବନ୍ଧୁ ତୋ-ସୁଷମା   ସଙ୍ଗେ ନୁହେଁ ସର ।

ପାଦ ଦେଶ ତୋର   କେତେ ମନୋରମ !
ସୁଷମା ବର୍ଣ୍ଣିବେ   ରସନା-ଅକ୍ଷମ ।
ବନଦେବୀଙ୍କର   ଭୂଷଣ ଶିଞ୍ଜିତ ,
ପ୍ରାୟେ ଶୁଭେ ତୋର   ବିହଙ୍ଗ କୂଜିତ ।
ବୁଲଇ ହରିଣୀ   ଏଣେ ତେଣେ ଧାଇଁ ,
ଚାରୁ ଗ୍ରୀବାଭଙ୍ଗେ   ପଛକୁ ଅନାଇ ।
ତା-ଚାରୁ-ଲୋଚନ—   ବିଳାସ ଚାହାଣୀ ,
ଚାହାନ୍ତେ ବିରହୀ—   ହୃଦ ହୁଏ ହାଣି ।
ଠାବେ ଠାବେ ତୋର   ବନ୍ଧୁର କର୍କଶ ,
ଶିଳା ତଳେ ତେଇଁ   ହୁଏ ସେ ଅବଶ ।
କଳାପ ବିସ୍ତାରି   କଳାପି ନାଚନ୍ତି ,
ମେଘାଲୋକେ ଅଛି—   ପ୍ରଫୁଲ୍ଲ ହୃଦୟ ।
ନାଚନ୍ତି ତୋ ଚାରୁ   ପାଦତଳେ ରଙ୍ଗେ ,
ହୃଦୟ ଉଚ୍ଛୁଳେ   ଆନନ୍ଦ ତରଙ୍ଗେ ।
ବିହଙ୍ଗମେ କେତେ   ତୋରଲତା ଦୋଳେ ,
ମଧୁର କୂଜନେ   ଖେଳୁଛନ୍ତି ଭୋଳେ ।

ନାନାବିଧ ବୃକ୍ଷ—  ମାଳେ ଅନ୍ଧାବୃତ ,
ପ.ବ୍ୟପକ୍ଷୀ ତୋର  ଦେଶେ ସୁଲଳିତ ।

କି ଗୁଣ ବର୍ଣ୍ଣିବି  ହେ ଗୁଣ ପର୍ବତ
ଉତ୍କଳର ତୁହି  କି ମହା ଭାରତ । ?

ଭ୍ରମିଲି ଉତ୍କଳେ  ସ୍ନେହେ ନାନା ସ୍ଥାନ
ଦେଖିଲି ବିବିଧ  ଦୃଶ୍ୟ ଚିତ୍ରମାନ ।

କାହିଁ ନ ଦେଖିଲି  କିନ୍ତୁ ଉତ୍କଳରେ ,
ତାହା, ନାହିଁ ଯାହା  ତୋର କଳେବରେ ।

ଭାରତରେ ଯାହା  ନାହିଁ ଭାରତରେ ,
ଦେଖା ନାହିଁ ଶୁଣା  ନାହିଁ ତାହା ଥରେ ।

ଯେସନ ଉତ୍କଳ ସୁଷମା  ଭଣ୍ଡାର ,
ଧରିଛୁ ତୋ ଦେହ  ବିଶାଳ ଆକାର ।

ଶୋଭାର ଆଧାର  ତୋ-ଗିରି ଶିଖର
ଦେଖି କେ ନୋହିବ  ପ୍ରେମେ ଜର ଜର ।

ବନଦେବୀଙ୍କର  ଗୁପ୍ତ କେଳି ସ୍ଥଳୀ ,
ତୋର ଅନ୍ଧାରୁଆ  ଗିରି ଗୁହାବଳୀ ।

ତୋ ତୁଙ୍ଗ ଶିଖର—  ନିର୍ଝର ଦର୍ପଣେ ,
ବିଲୋକି ବଦନ  ସୁରନାରୀଗଣେ ।

ଆକାଶ ବିମାନେ  ବସି ପ୍ରେମ ଭରେ ,
"ଭାସନ୍ତି ଆନନ୍ଦେ  ହସି ପରସ୍ପରେ ।

ଦେଖ ଦେଖ ସଖି     ଏ ଗିରି ଶିଖର ,
ଦିଶେ ଅହା କେଡ଼େ     ଚାରୁ ମନୋହର ।

ମାରକତ କାନ୍ତି     ଦଳ ଏ ଶିଖରୀ ,
ରାଜଇ ଉତ୍କଳେ     ଶଇଳ କେଶରୀ ।

ଧନ୍ୟ ଧନ୍ୟ ଅରେ     ଉତ୍କଳ ଭୂତଳ ,
ସକଳ ଶୋଭାର     ତୁ ଆଶ୍ରୟ ସ୍ଥଳ ।

ସ୍ୱର୍ଗ ସୁଖୁଁ ବଳ     ତୋର ସୁଖ ଚୟ ,
ବିବିଧ ବିଳାସ     ସମ୍ଭୋଗ ନିଳୟ ।

ଏହିପରି ସୁଖେ     ଥାଅ ଚିରକାଳ ,
ବ୍ୟାପୁ ତୋ-କୀରତି     ଜଗତ ବିଶାଳ ।

ନିତ୍ୟ ସୁଖ ତୋର     ଭୁଞ୍ଜନ୍ତୁ ଭୂପାଳେ ,
କରନ୍ତୁ ପରଜା     ହିତ ସବୁକାଳେ ।

ସ୍ୱଜାତି ସ୍ୱାର୍ଥିତେ     କରୁଥାନ୍ତୁ ଦାନ ,
ତେଜି ଅପବ୍ୟୟ     ବଢ଼ାନ୍ତୁ ସମ୍ମାନ ।

ଚିହ୍ନନ୍ତୁ ଚିହ୍ନରି     ହୋଇ ଗୁଣ ରାଶି ,
ପ୍ରଜାପୁଞ୍ଜଙ୍କର     ହୁଅନ୍ତୁ ବିଶ୍ୱାସୀ ।

ଅନନ୍ଦେ ରହନ୍ତୁ     ତୋହର ସନ୍ତତି ,
ବ୍ରାହ୍ମଣେ ଦିଅନ୍ତୁ     ଧର୍ମ୍ମେ କର୍ମ୍ମେ ମତି ।"

ତୋ-ଶୋଭା-ଦର୍ଶନେ     ନିତି ଏହିପରି ,
କରନ୍ତୁ ମଙ୍ଗଳ     ଆଶିଷ ଅମରୀ ।

ଉପଦେଶମୟ ସେ ବାଣୀ ଶ୍ରବଣେ ,
ଜାଗି ଉଠେ ତୋର ହୃଦ ଅନୁକ୍ଷଣେ ।
ଧନ୍ୟ ଧନ୍ୟ ତୁହି ମଳୟ ଶିଖର ,
ଉତ୍କଳ ଶିଖରୀ— ସମାଜ କେଶର ।

ତୁ ଅନେକ ଗିର ଦେଖୁ ଗିରିବରଣା ,
କେତେ ତୋର ଜଣା କେତେ ବା ଅଜଣା ।

ଦୂଁ ଯ୍ୟାପୀଡ଼, କୋଇ— ଦନ୍ତା ଅଦ୍ଧାରୁଅ ,
ଗୋନାସିକା, ଗନ୍ଧ— ମାଦନ ବାରୁଅ ।

ଏମାନଙ୍କ ସଙ୍ଗେ ତୋର ଗିରମଣି ,
ପଟ୍ଟରେ ଦେଖା ଦେଖି ଜଣା ଜଣି ।

ଦେଖୁ ଅଛୁ ମାତ୍ର ଗିର ସହସ୍ରଶଃ
ନ ଜାଣୁ ତୁ କଣ୍ଠ ତାଙ୍କ ଗୁଣ ଯଶ ।

ନ ଦେଖିଲେ ମଧ ତୋତେ ସେ ସକଳେ
ଜାଣନ୍ତି ତୋହର ମହିମା ଉତ୍କଳେ ।

ଚକ୍ରବର୍ତ୍ତୀ ଚନ୍ଦ୍ରେ ବଡ ବଡ ରଜାଁ ,
ଅଛୁ କେତେ ଶ୍ରେଷ୍ଠ ରାଜା ତା-ପରଜା ।

ତାଙ୍କୁ ଚହିବାକୁ କାହିଁ ଅବସର ,
ମାତ୍ର ସେ ଜାଣନ୍ତି ମଣ୍ଡଳ ଈଶ୍ୱର ।

ଦେଖିଛୁ ଅନେକ ବନ ଉପବନ ,
ଠାବେ ଠାବେ ତରୁ— ଲତା ସୁଶୋଭନ ।

ହୋରକ୍ଷିଣୀ ବନ— ସଗେ ତୁଳନାରେ
ସେମାନେ ଅଟନ୍ତି ନଗଣ୍ୟ ବୈଭବେ !

ବ୍ୟାସ ବାଲ୍ମୀକ— କୀରତ୍ତ ସଙ୍ଗତେ
ସରକ୍ଷ ହୋଇବ ଅଉ୍ କୃତ ସତେ ?

ସ୍ୱଭାବେ ତୁ ମାଲ୍ୟ— ଗିର ଗିରନଥ୍ୟ ,
ଯଦ୍ଦ ନାହିଁ ତୋର ପୁରାଣେ ପ୍ରସିଦ୍ଧି ।

ନଶ୍ୱର ସଂସାର କପଟର ଗଢ ,
ବଡ ଯହିଁ ସାନ ସାନ୍ ପୁଣି ବଡ ।

ଉତ୍କଳ ସ୍ୱରଗେ ତୋଲକ୍ଷିଣୀ ବନ
ସୁରାଜର ଯେମନ୍ତେ ନନ୍ଦନ କାନନ ।

ତୋର ଅଧିଷ୍ଠାନ ଛବିଲ ଉତ୍କଳେ
ମଣି କାଞ୍ଚନର ସଂଯୋଗରୁ ବଳେ ।

ଏ ଉତ୍କଳେ ଖଣା— ପାଣି କୃପା ବିନା
ଅରଣ୍ୟ ପ୍ରସୂନ ଦଶା ତୋର ସିନା ।

ସର୍ବଦା ଥିବ ଭ ତୋର ଅପମାନ ,
ଘୁଞ୍ଚିବ ସେ ଦିନେ, ବଢିବ ସମ୍ମାନ ।

ଚକ୍ରନେମି ପରି ଭାଗ୍ୟ ଏ ଭବରେ
ଘୂରେ କେବେ ତଳେ କେବେ ବା ଉପରେ ।

କବର ତୁ ହେବୁ ବିନୋଦନ ଶାଳା
କୋବିଦର ହେବୁ ହୃଦ ଜପମାଳା ।

ତୋ ଦେହ ଅଶ୍ରିବେ ପରମ ଈଶ୍ୱର
ଭକ୍ତର ତୁ ହେବୁ କଳ୍ପ ଧରାଧର ।

ବାଜିବ ମଙ୍ଗଳ ଉତ୍ସବ ବାଜଣା ,
ଗିରିରାଜମଧେ ହେବୁ ଅଗ୍ରେ ଗଣା ।

ଚହ୍ଲାଇବ ତୋତେ ଏ କ୍ଷୁଦ୍ର କବିତା ,
ନାଚିବ ନୂପୁରେ ତୋ-ଶୋଭା-ଶାଳିତା ।

ଉତ୍କଳର ଅଟୁ ତୁ ସାରସଗ୍ରନ୍ଥ ,
କରିବ କେ ରୂପେ ତୋ ସଙ୍ଗେ ବିଗ୍ରହ ।

ଯେ ଛବି ଅଦୃଷ୍ଟ ତୋର କଳେବରେ,
ସେ-ଛବି-ଅଭାବ ଛବିଲ ଉତ୍କଳେ ।

ଅଶୋକ, ବକୁଳ, ଶେଫାଳି, କେତକୀ ,
ନାଗେଶ୍ୱର, ଚମ୍ପା, ଧୂରୁତୁ, ଧାତକୀ ;

ଏ ଆଦି ପାଦପେ କରୁଛନ୍ତି ଲୀଳା ।
କାହିଁ ବା ଝରଣା ପ୍ରସନ୍ନ ସଲିଳା ।

ବନଦେବୀ କଣ୍ଠି— ସ୍ୱର୍ଣ୍ଣ ଅଳଂକାର
ଶୋଭେ ଠାବେ ଠାବେ ତୋର କର୍ଣ୍ଣିକାର ।

ପ୍ରକୃତି ସୁନ୍ଦରୀ କେଶ ପାଶ ଝରି
ଦଶେ ତୋ କେତକୀ ବାସମନୋହରୀ ।

ତୋ-ତମାଳ-ନୀଳ କୁନ୍ତଳା ମେଦିନୀ
ପୁଷ୍ପରଜୋବ୍ୟାଜ— କୁଙ୍କୁମ ଶୋଭିନୀ ।

ନାନା ବନସ୍ପତି— ବ୍ରତତୀ ଶୋଭିତ
ଅରଣ୍ୟାନୀ ଘୋର ଝିଲ୍ଲୀ ଝଙ୍କାରିତ ।
ଦିବସେ ଅନ୍ଧାରେ ନ ଦିଶଇ ବାଟ
ରମନ୍ତି ଅଜସ୍ର ନୈଶ ଖଗ ଥାଟ ।
ଦର୍ଶନଶୀଥିନୀ ଅନ୍ଧକାର ରାଶି
ଉଦ୍ଭବସ୍ତେ ତହିଁ ଦୂଲେ କ ବିଭାସୀ ।
ଘୋ ଅନ୍ଧାର ବନ କାହିଁ ତାରକିତ ,
ଶୁଭ୍ର ସ୍ୱଚ୍ଛ ପୁଷ୍ପେ ଅନ୍ଧା କ ଶୋଭିତ ।

ମନ୍ଦ ବାତେ ତହୁଁ ପ୍ରସରଇ ଗନ୍ଧ
ଧାମଇ ଗୁଞ୍ଜରି ଅଳି ବାସ ଅନ୍ଧ ।
କାହିଁ ବଂଶବନେ ଶୋଭଇ ନିର୍ଝର ,
ଝର୍ଝର ଶବଦେ କାନନ ମୁଖର ।
କାହିଁ ଜଟା ମାଁସୀ ବନତପସ୍ୱିନୀ ,
ଶୋଭେ, କାହିଁ ଭୂମି କୂଟଜ ଶୋଭିନୀ ।
ନବ ଯଉବନୀ ସୁନ୍ଦରୀ ବ୍ରତତୀ
ଅଭିନବ ପ୍ରେମ— ଶୀଳା ବ୍ରୀଡ଼ାବତୀ ।

ଅଶ୍ରିଛି କାହିଁ ବା ରସାଳ ବିଟପୀ ,
ବିଟ ବାତ ସ୍ପର୍ଶେ ଦେହ ଉଠେ କମ୍ପି ।
ଶୋଭା ରାଣୀ ଝରି ଲୋଚନ ରୋଚକ
(୧) ଘୋ-ସିତ-ଅଣୁଆ କୁସୁମ ସ୍ତବକ ।

---

(୧) ଭଲ୍ଲାମକ ନାନାବର୍ଣ୍ଣ ବିଶଷ୍ଟ ଝଗୁବାର ଫୁଲ ତେନ୍ଥା ।

ଜନ୍ତୁ ନାହିଁ ଶଙ୍କ, ଦେଡେ ସୁରୁଚର !,
ସବୁଠାରେ ସବୁ ନ ଥାଏ ବଧିର ।
ଦେଖ କ ସୁନ୍ଦର ! ତୋ ବଶ କଟୀର
ସୁରୁଚର କୁଞ୍ଜ ପ୍ରକୃତ ଦେବୀର ।

କ ସୁନ୍ଦର ତୋର ସବୁଅ ଶିକୁଳା,
ଯା ଦେନ ଦୁଃଖିଙ୍କ ବାସ ଅନୁକୂଳା ।
ରଜତ ପ୍ରସୂନେ ପଦ୍ମରାଗ ଫଳେ
ବାଭ୍ରସୀ (୧) ଅଠିଲ— ଶୋଭୁ ଗିର ବଳେ ।

ଦଶଇ ପ୍ରକାଣ୍ଡ କାଣ୍ଡ ଯାର ଧଳା
କ୍ଷୁଦ୍ର ପର୍ଣ୍ଣାବଳୀ ସ୍ନିଗ୍ଧ ପୁଣି କଳା ।
କେତେ ଉପାଦେୟ ତୋ ଶିଆଳୀ ଲତା ,
ଯା ପତ୍ରେ ନର୍ମିତ ଖଲ୍ଲୀ, ପାତ୍ର, ଛତା ।

ନୃପ ଅଭିଷେକେ ଧ୍ୱଜ ବନୋଦଧି ,
କୃଷ୍ଣାଙ୍ଗ ସଦର କାଇଖ ମାଳଅ ;
ବରଚ ଯାପତ୍ରେ ଶ୍ୟାମଳ ପଗଡ
ଟେକ ନୃପ ଶିରେ ଦ୍ୟନ୍ତ ଜୟରଡ ।

ତୋ ଅଶନ ନବ— ନୀରଦ ଶ୍ୟାମଳ
ବଦ୍ଧ୍ୟାବୃକ୍ଷି ଯୋଗୁଁ ବର୍ଦ୍ଧିଣ୍ଡି ବହ୍ଳଳ ।
ସୁବଶାଳ ତୋର ନ୍ୟଗ୍ରୋଧ ପାଦପ
ଛାୟାଦାନେ ରତ କଳପ କଳପ ।

---

(୧) ବୃକ୍ଷ ବଶେଷ ।

ଏଥିର ଉଦ୍ଭିଦେ ଶୋଭିତ ହୋ ଅଙ୍ଗେ
ପ୍ରକୃତି ସୁନ୍ଦରୀ ଖେଳେ ନାନା ରଙ୍ଗେ ।

ସକଳ ଜୀବର ତୁ ଅଟୁ ଆକର
ବର୍ଣ୍ଣିବାକୁ କାହିଁ ଶକତି ଲୋକର ।

ସ୍ୱର୍ଗୀୟ ସମ୍ପଦେ ପୂର୍ଣ୍ଣ ହୋ-ଅଟବୀ,
କଲ ନୂତନେ ତାର ରମଣୀୟ ଛବି ।

ମନ୍ଦାନିଲେ ଝୁଲୁ ଅଛି ନଲବନ,
କୁଡ଼କୁଡ଼ ପତ୍ର ତଳେ ସୁଶୋଭନ ।

ପନ୍ତ ପନ୍ତ ହୋଇ କାହିଁ ବାୟା ବଣି,
କାହିଁବା ଅସଂଖ୍ୟ ଶୁକ ପକ୍ଷିମଣି ।

କାହିଁ ଭରତଆ ବିରଳ ନିସ୍ୱନେ
ଗୁରୁ ଲକ୍ଷ୍ୟେ ଉଡ଼େ ଉଲ୍ଲାସେ ଗଗନେ ।

କାହିଁବା କପୋତ ବସି ତରୁଡ଼ାଳେ
ରବଇ କରୁଣେ ପତ୍ର ଅନ୍ତରାଳେ ।

ଶୁଣ୍ଡ ଟେକି କାହିଁ ଆସୁଛି ପଲାଶି
ନାଶି ଦନ୍ତାବଳ ତରୁ ଗୁଳ୍ମ ରାଶି ।

ଉଡ଼ାଇ ଦଅଇ କର୍ଣ୍ଣପଙ୍ଖା ଚାଳି
ମଦ ସୁବାସିତ ଗଣ୍ଡ ମକ୍ଷିକାଳି ।

ପଦଭରେ ତାର କମ୍ପେ ବସୁମତୀ,
ସେ ଶବ୍ଦେ ଚକିତ କୁରଙ୍ଗ ଦମ୍ପତି ।

ଶୃଙ୍ଗାନ୍ତ ଉଲ୍ଲଙ୍ଘିବେ ଖଡ଼ି ଭୃଣାଙ୍ଗାର,
ଶୃଙ୍ଗୁ କଣ୍ଠି ଗଢ ବଚନ୍ତୁଁ ବାଙ୍ଗାର ।
ଶୃଙ୍ଗଁ ଏଣେ ତେଣେ ଘେଣେ ହୋଇ ଠିଆ
ଲମ୍ଫ ପରେ ଲମ୍ଫ ଦଅଇ ଠେଙ୍ଗୁଆ ।

ଚପି ଚପି ପାଦ ଗୃଲଇ ଖୁରାଣ୍ଡି (୧)
ଘାସବୁଦା କାହିଁ ଦରାଣ୍ଡି ଦରାଣ୍ଡି ।
ଗୁଣ୍ଡିତ ଅକୃତ ବଦନ ଗୋଞ୍ଜିଆ,
ସୂକ୍ଷ୍ମ ପୁଚ୍ଛ ଅଙ୍ଗା କ ବଲବଲଆ ।

ଟିପ ମାତ୍ର ଯେବେ ପଡ଼େ ସେ ଫେଷ୍ଟାଇ
ଥକାମରା ଖାରେ ନପାର ଉଠାଇ ।
ସମ୍ବର ଅକ୍ଳୃଭ ତୁରଙ୍ଗ ଟାପୁଆ
ବିଶଦ କନ୍ଦର ପତଙ୍ଗର କୁଅ;

ଜନନୀ ସଙ୍ଗତେ ହର୍ଷେ ମାର କୁଦା
ଭ୍ରମଇ ଅରଣ୍ୟେ ଶୃଙ୍ଗି ଶୃଙ୍ଗି ବୁଦା ।
ଭୀଷଣ ଶାର୍ଦ୍ଦୂଳ କାହିଁ ବା ପ୍ରାନ୍ତରେ
ହଣ୍ଡାଳ ଭୈରବେ ଗରବେ ସଞ୍ଚରେ ।

ବରାହ ସୂତୀକ୍ଷ୍ଣ ବିଷାଣ -ଭୀଷଣ,
ଦନ୍ତୀ-ବଳ କରୀ କେଶରୀ ବାରଣ ।
ବିକଟ ଭଲ୍ଲୂକ ଦେହ ରୋମମୟ,
ସମ୍ବର, ଜମ୍ବୁକ ଆଦ ଜୀବଚୟ ।

---

(୧) ଉଲ୍ଲାକାମକ ଜୀବ ବିଶେଷ ।

ତୋର୍କେୟ ଶୋଭନ୍ତ   ଶୈଳ ଅପ୍ରମିତ,
ଅପ୍ରଧୃଷ୍ୟ ଭୁଜ   ତୋ ତେଜ ଅମିତ ।
ଠାବେ ଠାବେ ଦେଖି   ବିଭବ ପୁରାଣ
ପୂରିତ ସାତ୍ତ୍ୱିକ—   ଭରେ ମୋ ପରାଣ ।
ଦୁର୍ବର୍ଷ ଭୁଜଙ୍ଗ   ଦିଗମ୍ବର ବେଶ
ନାହିଁ ତହିଁ ଶୀତ   କୃଠ ଖାତ ଲେଶ ।
ମିଥ୍ୟା ନଜାଣଇ   କଦାପି ଜୀବନ,
ଫଳ ମୂଳାହାରୀ   ପଲ୍ଲବ ବସନ ।
ପର ପଦାର୍ଥରେ   ନ ଥାଏ ମାନସ
ଉଚ୍ଛୁଳେ ହୃଦୟେ   ରାଜ ଭକ୍ତି ରସ ।
କଟି ବେନ ପାର୍ଶ୍ୱେ   ପତ୍ର ମିଶା ଜାଲ
ଝୁଲଇ ନ ଜାଣେ   ମନ ମାୟାଜାଳ ।
କେତେ ଅକୃତ୍ରିମ   ନୟନ ଗୃହାଣୀ
ସ୍ମରାଏ ମାନସେ   ପୁରାତନ ଠାଣି ।
ଦେଖି ସେ ଅଭୂତ   ରୂପ ଗଉରବ
ନାଚଇ ହୃଦୟେ   ପୁରାଣ ବିଭବ ।
ଧିକ୍କାରଇ ମନ   ନୂତନ ସଭ୍ୟତା,
ଦେଖାଏ କପଟେ   ଯେ ବନ୍ଧୁ ଯୋଗ୍ୟତା ।
ନାହିଁ ଯା ତୋଅଙ୍ଗେ   ନାହିଁ ତା ଉତ୍କଳେ,
ବିଭବ ତୋହର   ବଚନରୁ ବଳେ ।

୪ ବର୍ଣ୍ଣିବ ତୋର ହେ ମାଲ୍ୟ ଅଚଳ,
ସାଂସାରିକ ଦୁଃଖେ ଉଦ୍ବେଳ ବିକଳ ।
ଅଦ୍ଭୁତ ସଂସାରେ ମୋପ୍ରାଣ ଅଦ୍ଭୁତ,
ଆକସ୍ମିକେ ନାନା ବିପଦ ସମ୍ଭୂତ ।

ସଢ଼ଇ ରୋଗରେ ସଦା କଳେବର,
ନୈରାଶ୍ୟ କାଳିମା— ଆବୃତ ଅନ୍ତର ।
ମୁଖେ ଭୁଚ୍ଛାହାସ, ଅନ୍ତରେ ବିଷାଦ,
ଘୋଟିଅଛି ଦେହ ଯ.କ ଅବସାଦ ।

ଛଲେ ନାହିଁ ହର୍ଷ ପରାଣ ଭିତରେ,
ସର୍ବଦା ନିମଗ୍ନ ଅଭାବ ସାଗରେ ।
ଦାରିଦ୍ର୍ୟ ପାବକ— ବିଦଗ୍ଧ ହୃଦୟ,
କବିତା ଦେବୀର ନୁହେ ସୁଖାଳୟ ।

ଚିନ୍ତାନଳେ ପୋଡ଼ି ଯାଏ ଭାବରାଶି,
ପଳାଏ କଳ୍ପନା ଦୁଃଖ ସ୍ରୋତେ ଭସି ।
ଦଇବର ସିନା ଏ କୂଟ ପ୍ରଭାବ
ଚହ୍ନିବାକୁ ଧନ ଚହଳି ଅଭାବ ।

ପ୍ରକୃତ କଥାରେ ସମସ୍ତେ ବଇରୀ
(୧) ତୋଷାମଦ ପ୍ରିୟ ବଡ଼ଲୋକ ଗିର ।
କାହା ଦୁଃଖ କେହି ନଚହେଁ ସଂସାରେ
ସର୍ବେ ସ୍ୱାର୍ଥପାଶ— ଜଡ଼ିତ ବେଭାରେ ।

---

(୧) ଯାବନିକ, ଖୁସାମଦ ।

କେଅବା ଚଷୁଛନ୍ତି ପାଣ୍ଡିତ୍ୟର ଛଟା
ବିବିଧ ଇଙ୍ଗିତେ କରୁଥାନ୍ତି ଥଟା ।

ଯେ ଦେଶର ଅଟେ ଏପରି ବେଭାର
ସେ ଦେଶକୁ ମୋର ଅସଂଖ୍ୟ ଜୁହାର ।

ବିଜନ ବିପିନ ବାସ ଶ୍ରେୟ ସ୍ଥିର,
ନ ରହିବି ମଧେ କପଟ ଭିତର ।

ଜଡ଼ ହେବା ଭଲ ଏ ପାପ ସଂସାରେ
ମାନବ ଜୀବନ ପୂର୍ଣ୍ଣ ହାହାକାରେ ।

ତଥାପି କରିଲି ଯାହା ମୁଁ ଆହ୍ୱାବ
ସେ ସିନା ତୋହର ବିଭବ ପ୍ରଭାବ ।

ଧନ୍ୟ ମାଲ୍ୟଗିରି ତୋହର ଜନମ,
ସଂସାର ଯନ୍ତ୍ରଣା ନଜାଣେ ମରମ ।

ନାହିଁ ତୋର ହୃଦେ ସ୍ୱାର୍ଥ ଅହଂକାର,
ବ୍ରତ ତୋର ସଦା ପର ଉପକାର ।

କବିତା ଦେବୀର ରମ୍ୟ ନିକେତନ
ତୋର ଏ ବିଶାଳ ଦେହ ସୁଶୋଭନ ।

ହେ ଗିରୀନ୍ଦ୍ର ତୋର ମାରକତ ଚୂଡ଼ା
କବି ଭୁଲିନାର ସେ ବିବେକ ବୁଡ଼ା ।

ତୋଠେ ଲଭି ସଦା ହସଇ କବିତା
ସରୋଜିନୀ ଲଭି ଯେସନ ସବିତା ।

ତୋର ଗିରି ରାଣି;        ସୁଷମା ମାଧୁରୀ
ପ୍ରଦର୍ଶିଲୁ ସିନା        ମୋର ବାନ୍ଧା ଦୃଷ୍ଟି ।

ତୋଶୋଭା ବର୍ଣ୍ଣିବେ        ନୁହେ ମୁଁ ଭାଜନ
ନିଜଗୁଣେ କର        ମୋ ଦୋଷ ମାର୍ଜ୍ଜନ ।

ସମାପ୍ତ ।

ଓଁ ତତ୍ ସତ୍ ।

——:*:——